VOL. 2 NO. 1 UTKAL PRASANGA Regd. No. O-BN-
Licence No. C.R.N.P. 5—Licensed to post without Pre-payment



ରାକ୍ଷୀ ପୂର୍ଣ୍ଣିମା ଦିନ ପ୍ରଜାପିତା ବ୍ରହ୍ମାକୁମାରୀ ଇଶ୍ୱରୀୟ ବିଶ୍ୱବିଦ୍ୟାଳୟ କୁମାରୀମାନେ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ରାକ୍ଷୀ ପିନ୍ଧାଇ ଦେଉଛନ୍ତି ।



ଯାଜପୁରଠାରେ ଜିଲ୍ଲା ଯୋଜନା ଓ ଉନ୍ନୟନ ପରିଷଦ ବୈଠକରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା
ପରିଭାଷଣ ଦେଉଛନ୍ତି ।



ଭୁବନେଶ୍ୱରଠାରେ ଅନୁଷ୍ଠିତ ସ୍ୱାଧୀନତା ଦିବସ ପାଳନ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ ପତାକା ଉତ୍ତୋଳନ କରି ଅଭିବାଦନ ଗ୍ରହଣ କରୁଛନ୍ତି (୧୫/୮)।



ଭଦ୍ରକଠାରେ ଅନୁଷ୍ଠିତ ସ୍ୱାଧୀନତା ଦିବସ ପ୍ୟାରେଡ୍ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଅଭିବାଦନ ଗ୍ରହଣ କରୁଛନ୍ତି (୧୫/୮)।

# ଉତ୍କଳ ପ୍ରସଙ୍ଗ

୫୦ ଭାଗ ୨ୟ ସଂଖ୍ୟା ଭାଦ୍ର ୧୯୧୪ ଶକାବ୍ଦ ସେପ୍ଟେମ୍ବର ୧୯୯୩

## ସମ୍ପାଦକ ମଣ୍ଡଳୀ



ପ୍ରକାଶନ

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର
ଭୁବନେଶ୍ୱର

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ
ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ ।
ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ
ସେଗୁଡ଼ିକ ବିଷୟରୁ ପତ୍ରିକା ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ମଧ୍ୟ ଏହି ପତ୍ରିକାରେ ପ୍ରକାଶିତ
ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ

## ଗୁରୁ ଦିବସ ପାଳନ ଅବସରରେ
## ମୁଖ୍ୟମନ୍ତ୍ରୀ
# ଶ୍ରୀ ବିଜୁ ପଟ୍ଟନାୟକଙ୍କ
# ବାର୍ତ୍ତା



ଦ୍ୱାତ୍ରିଂଶତମ ଗୁରୁ ଦିବସ ପାଳନ ଅବସରରେ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ନିମନ୍ତେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ରାଜ୍ୟବାସୀଙ୍କୁ ନିବେଦନ କରିଛନ୍ତି । ମୁଖ୍ୟମନ୍ତ୍ରୀଙ୍କର ବାର୍ତ୍ତା ନିମ୍ନରେ ପ୍ରଦତ୍ତ ହେଲା ।

"ଚଳିତ ବର୍ଷ ସେପ୍‌ଟେମ୍ବର ପାଞ୍ଚ ତାରିଖରେ ସମଗ୍ର ଦେଶରେ ଦ୍ୱାତ୍ରିଂଶତମ ଗୁରୁ ଦିବସ ପାଳନ କରାଯାଉଛି । ଏହି ଅବସରରେ ମୁଁ ରାଜ୍ୟର ସମସ୍ତ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି ।

ଶିକ୍ଷକମାନେ ସମାଜର ଦିଗ୍‌ଦର୍ଶକ । ଦେଶର ଭବିଷ୍ୟତ ନାଗରିକଙ୍କୁ ଗଢ଼ିବାର ଗୁରୁ ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ । ନୂତନ ସମାଜ ଗଠନ ଦିଗରେ ମୂଲ୍ୟବାନ ଅବଦାନକୁ ସମ୍ମାନ ଜଣାଇ ଜାତୀୟ ଶିକ୍ଷକ କଲ୍ୟାଣ ପାଣ୍ଠି ଗଠନ କରାଯାଇଛି । ଦୁଃସ୍ଥ ଓ ଅଭାବଗ୍ରସ୍ତ ଶିକ୍ଷକ, ଶିକ୍ଷୟିତ୍ରୀ ଓ ସେମାନଙ୍କ ପରିବାରବର୍ଗଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇ ଦେବା ପାଇଁ ଏହି ପାଣ୍ଠି ଉଦ୍ଦିଷ୍ଟ । ଏହି ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କରିବା ପାଇଁ ମୁଁ ରାଜ୍ୟବାସୀ ଭାଇଭଉଣୀମାନଙ୍କୁ ନିବେଦନ କରୁଛି ।"

## ଗୁରୁ ଦିବସ ପାଳନ ଅବସରରେ
## ଉଚ୍ଚ ଶିକ୍ଷା ମନ୍ତ୍ରୀ
# ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀଙ୍କ
# ବାର୍ତ୍ତା



ଆଗାମୀ ଗୁରୁ ଦିବସ ପାଳନ ଉପଲକ୍ଷେ ଉଚ୍ଚ ଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି :—

"ସେପ୍ଟେମ୍ବର ୫ ତାରିଖ, ୧୯୯୩ ମସିହା ସମଗ୍ର ଦେଶରେ ୩୨ତମ "ଗୁରୁ ଦିବସ" ରୂପେ ପାଳନ କରାଯାଉଥିବା ଅବସରରେ ମୁଁ ଆମ ରାଜ୍ୟର ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ଗୁରୁବାଦ ଏକ ମହାନ ପରମ୍ପରା । ପରମ ପୂଜ୍ୟ ଗୁରୁମାନଙ୍କର ଅତୁଳନୀୟ ଓ ଅବିସ୍ମରଣୀୟ ଅବଦାନରେ ଏ ଦେଶର ଶିକ୍ଷା, ସଂସ୍କୃତି ଓ ଇତିହାସ ସମୃଦ୍ଧ ହୋଇଅଛି । ଗୁରୁମାନଙ୍କର ଆନ୍ତରିକ ଆଶୀର୍ବାଦରେ ହିଁ ବ୍ୟକ୍ତିର ପ୍ରତ୍ୟେକ କ୍ଷେତ୍ରରେ ଉନ୍ନତି ସାଧନ ହୋଇଥାଏ । ଶ୍ୱେତକେତୁ ଉଦ୍ଦାଳକଙ୍କଠାରୁ ସତ୍ୟ ଜ୍ଞାନ ଶିକ୍ଷା କରିଥିଲେ । ମୈତ୍ରେୟୀ ଯାଜ୍ଞବଲ୍କ୍ୟଙ୍କଠାରୁ, ଭୃଗୁ ବରୁଣଙ୍କଠାରୁ, ନାରଦ ସନତ୍କୁମାରଙ୍କଠାରୁ, ନଚିକେତା ଯମଙ୍କଠାରୁ ଓ ଇନ୍ଦ୍ର ପ୍ରଜାପତିଙ୍କଠାରୁ ଜ୍ଞାନ ଆହରଣ କରିଥିଲେ । ଯେଉଁମାନଙ୍କର ପବିତ୍ର ଆଦର୍ଶମୟ ଜୀବନ ସମସ୍ତଙ୍କୁ ପ୍ରଭାବିତ କରିଥାଏ ଓ ଯେଉଁମାନେ ଏ ଦେଶର ଭବିଷ୍ୟତ ନାଗରିକ ଗଠନ କରିବାରେ ଅନବରତ ଚେଷ୍ଟିତ ସେମାନେ ଆମର ପ୍ରାତଃ ସ୍ମରଣୀୟ, ପୂଜ୍ୟ ଓ ନମସ୍ୟ ।

'ଗୁ' ଶବ୍ଦର ଅର୍ଥ ଅନ୍ଧକାର । 'ରୁ' ଶବ୍ଦର ଅର୍ଥ ଦୂର କରିବା । ଯେଉଁ ଶିକ୍ଷକ ଶିକ୍ଷୟିତ୍ରୀମାନେ ଅଜ୍ଞାନ ଅନ୍ଧକାରକୁ ଦୂର କରିବା ପାଇଁ ବ୍ୟକ୍ତିଗତ ପାରିବାରିକ ତଥା ପାର୍ଥିବ ସୁଖ ଓ ସ୍ୱାର୍ଥକୁ ଜଳାଞ୍ଜଳି ଦେଉଛନ୍ତି, ପରମ କୃପାମୟ ଭଗବାନଙ୍କର କୃପା ସତତ ସେମାନଙ୍କଠାରେ ରହୁ – ଆଜିର ଏ ପବିତ୍ର ଦିବସରେ ଏତିକି ମାତ୍ର ମୋର ବିନମ୍ର ପ୍ରାର୍ଥନା ।"

## ଗୁରୁ ଦିବସ ପାଳନ ଅବସରରେ ବିଦ୍ୟାଳୟ ଓ ଗଣ ଶିକ୍ଷା ମନ୍ତ୍ରୀ

# ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇଙ୍କ ବାର୍ତ୍ତା



ଗୁରୁ ଦିବସ ପାଳନ ଅବସରରେ ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ ନିମ୍ନୋକ୍ତ ବାର୍ତ୍ତା ପ୍ରଦାନ କରିଛନ୍ତି ।

"ପୂର୍ବ ବର୍ଷମାନଙ୍କ ପରି ଚଳିତ ୧୯୯୩ ମସିହା ସେପ୍ଟେମ୍ବର ୫ ତାରିଖରେ ସମଗ୍ର ଦେଶରେ ୩୨ତମ "ଗୁରୁ ଦିବସ" ପାଳନ କରାଯାଉଛି । ଏହି ଅବସରରେ ମୁଁ ଆମ ରାଜ୍ୟର ସମସ୍ତ ଶିକ୍ଷକ ଓ ଶିକ୍ଷୟିତ୍ରୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ଆଜି ଜାତିର ମହାନ୍ ଗୁରୁ ସ୍ୱର୍ଗୀୟ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କର ପୁଣ୍ୟ ଜନ୍ମତିଥି । ଜଣେ ଆଦର୍ଶ ଗୁରୁ ଓ ଜନନାୟକ ଭାବେ ତାଙ୍କର ଅବଦାନ ଚିର ସ୍ମରଣୀୟ । ପ୍ରାଚୀନ କାଳରୁ ଆଦର୍ଶ ଗୁରୁମାନେ ସମାଜରେ ମହନୀୟ ଆସନ ଗ୍ରହଣ କରି ଆସିଛନ୍ତି । ଚରିତ୍ରବାନ, ଆଦର୍ଶ ପରାୟଣ, କର୍ତ୍ତବ୍ୟନିଷ୍ଠ ଓ ଦେଶପ୍ରେମୀ ଛାତ୍ର ସମାଜ ଗଠନରେ ଶିକ୍ଷକମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଜିର ଏହି ପୁଣ୍ୟ ଅବସରରେ ମୁଁ ସେମାନଙ୍କୁ ରାଜ୍ୟବାସୀଙ୍କ ତରଫରୁ ହାର୍ଦ୍ଦିକ ଶୁଭକାମନା ଜଣାଇବା ସହିତ ନିବେଦନ କରୁଛି ଯେ ସେମାନେ ନୂତନ ସମାଜ ଗଠନରେ ଅଗ୍ରଣୀ ଭୂମିକା ଗ୍ରହଣ କରନ୍ତୁ ।"

# ସମ୍ପାଦକୀୟ

## ଗୁରୁ ଦିବସରେ ଗୁରୁ ଦକ୍ଷିଣା

ମହାନ୍ ଦାର୍ଶନିକ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମ ଦିବସ ଅର୍ଥାତ୍ ସେପ୍‌ଟେମ୍ବର ପାଞ୍ଚ ତାରିଖଟି ଆମର ପବିତ୍ର ଗୁରୁ ଦିବସ । ୧୯୬୨ ମସିହାର ଏହି ଦିବସରେ ଶିକ୍ଷକମାନଙ୍କ କଲ୍ୟାଣ ନିମନ୍ତେ "ଜାତୀୟ କଲ୍ୟାଣ ପାଣ୍ଠି" ଗଠନ କରାଯାଇ ଏହି ଦିବସକୁ ଗୁରୁ ଦିବସ ରୂପେ ଘୋଷଣା କରାଯାଇଥିଲା । ସେହି ଦିନଠାରୁ ପ୍ରତି ବର୍ଷ ସେପ୍‌ଟେମ୍ବର ପାଞ୍ଚ ତାରିଖଟିକୁ ଆମେ ଗୁରୁ ଦିବସ ରୂପେ ପାଳନ କରି ଆସୁଛୁ । ସୁତରାଂ ଏହା ଆମର ୩୨ତମ ଗୁରୁ ଦିବସ ।

ଗୁରୁ ଦିବସ ସମ୍ପର୍କରେ ଆଲୋଚନା କଲାବେଳେ ଭାରତୀୟ ସଂସ୍କୃତିରେ ଥିବା ଗୁରୁଭକ୍ତି, ଗୁରୁ ପୂଜା, ଗୁରୁ ସେବା, ଗୁରୁ ଦକ୍ଷିଣା ଇତ୍ୟାଦି ବିଷୟକୁ ରୋମନ୍ଥନ କରିବାକୁ ହେବ । ପୁଣ୍ୟ ଭୂମି ଭାରତ ମାଟିରେ ଜନ୍ମ ନେଇଥିବା ଗୁରୁମାନେ ସବୁବେଳେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇ ଗୌରବମୟ ଅଧ୍ୟାୟ ସୃଷ୍ଟି କରି ଯାଇଛନ୍ତି । ସ୍ୱୟଂ ଭଗବାନ ମଧ୍ୟ ରାମ ଅବତାରରେ ଗୁରୁ ବଶିଷ୍ଠଙ୍କ ସେବାରେ ନିଜକୁ ନିୟୋଜିତ କରି ଗୁରୁ ସେବାର ମହନୀୟତାକୁ ସମୃଦ୍ଧ କରିଛନ୍ତି । ଗୁରୁ ସନ୍ଦିପନୀଙ୍କ ଆଜ୍ଞାବହ ଭାବରେ ଶିଷ୍ୟ ଆରୁଣିର ତ୍ୟାଗ ଓ ନିଷ୍ଠାପରତା ଭାରତୀୟ ସଂସ୍କୃତିରେ ଗୁରୁ ଭକ୍ତିର ଗୁରୁତ୍ୱକୁ ପ୍ରମାଣିତ କରିଛି । ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ପୂଜାକରି ଗୁରୁ ଦକ୍ଷିଣା ରୂପେ ଏକଲବ୍ୟ ନିଜ ହାତର ବୃଦ୍ଧାଙ୍ଗୁଳି ଦାନ କରି ଭାରତୀୟ ସଂସ୍କୃତିରେ ଗୁରୁ ଦକ୍ଷିଣାର ମହତ୍ୱକୁ ମହିମାନ୍ୱିତ କରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ ଭାରତୀୟ ପରମ୍ପରାରେ ଗୁରୁ-ଶିଷ୍ୟର ସମ୍ପର୍କ ଏକ ପବିତ୍ର ସମ୍ପର୍କ ଏବଂ ଗୁରୁ ହିଁ ଏ ଜାତିର ଆଶ୍ଚର୍ଯ୍ୟ । ଆମ ସଂସ୍କୃତି ସହିତ ଗୁରୁ ଭକ୍ତି, ଗୁରୁ ପୂଜା, ଗୁରୁ ସେବା ଓ ଗୁରୁ ଦକ୍ଷିଣା ଅତି ନୀବିଡ଼ ଭାବେ ଜଡ଼ିତ ।

କିନ୍ତୁ ଦୁଃଖର ବିଷୟ, ଆମେ ଆମ ସଂସ୍କୃତିଠାରୁ କ୍ରମେ କ୍ରମେ ଦୂରେଇ ଯିବାରେ ଲାଗିଛୁ । ପୂର୍ବ କାଳରେ ସମାଜରେ ଗୁରୁଙ୍କ ଯାହା ଗୁରୁତ୍ୱ ଥିଲା, ଆଜି ତାହା ଲୋପ ପାଇବାକୁ ବସିଲାଣି । ଏ ଦୃଷ୍ଟିରୁ ଗୁରୁ ଦିବସ ପାଳନର ଆବଶ୍ୟକତା ଆମ ପାଇଁ ଅତ୍ୟନ୍ତ ମହତ୍ୱପୂର୍ଣ୍ଣ ।

ଗୁରୁମାନଙ୍କ ପ୍ରତି ଉପଯୁକ୍ତ ଗୁରୁତ୍ୱ ସାଙ୍ଗକୁ ଉପଯୁକ୍ତ ସମ୍ମାନ ଏବଂ ଶିକ୍ଷାର ପ୍ରସାର ସାଙ୍ଗକୁ ଶିକ୍ଷାର ମାନ ବୃଦ୍ଧି କରି ପାରିଲେ ହିଁ ଗୁରୁ ଦିବସ ପାଳନର ସାର୍ଥକତା । ସେଥି ପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ବେସରକାରୀ ଶିକ୍ଷାନୁଷ୍ଠାନର ଶିକ୍ଷକମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇ ପେନ୍‌ସନ୍ ବ୍ୟବସ୍ଥା କଲେ ଏବଂ ସାହାଯ୍ୟପ୍ରାପ୍ତ ଶିକ୍ଷାନୁଷ୍ଠାନର କର୍ମଚାରୀଙ୍କ ପେନ୍‌ସନ୍‌କୁ ଶହେ ଟଙ୍କାରୁ ତିନିଶହ ଟଙ୍କାକୁ ବୃଦ୍ଧି କଲେ । ଶିକ୍ଷାର ପ୍ରସାର ତଥା ଶିକ୍ଷାର ସୁଯୋଗ ସର୍ବସାଧାରଣଙ୍କୁ ଯୋଗାଇ ଦେବା ପାଇଁ ପ୍ରତି ଏକ କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ଉଃ ପ୍ରାଃ ବିଦ୍ୟାଳୟ ସ୍ଥାପନ କରିବାକୁ ନିଷ୍ପତ୍ତି ନେଇଛନ୍ତି । ବିଶେଷ ଭାବେ ଉଲ୍ଲେଖଯୋଗ୍ୟ ଯେ ଗତ ତିନି ବର୍ଷ ଭିତରେ ୨,୮୦୦ରୁ ଅଧିକ ଶିକ୍ଷକ ଏବଂ ୨୦,୦୩୫ ଜଣ ଶିକ୍ଷାକର୍ମୀଙ୍କୁ ନିଯୁକ୍ତି ଦିଆଯାଇଛି ।

ବିଜୁବାବୁଙ୍କ ଏ ସବୁ ବିଭିନ୍ନ ଉଲ୍ଲେଖନୀୟ ପଦକ୍ଷେପ ସତ୍ତ୍ୱେ ଆମକୁ ଆହୁରି ଅନେକ ପଥ ଅତିକ୍ରମ କରିବାକୁ ହେବ । ଏଥି ପାଇଁ ସମାଜର ସହଯୋଗ ଏକାନ୍ତ ଆବଶ୍ୟକ । ପ୍ରତ୍ୟେକେ ପ୍ରତ୍ୟେକ ସ୍ତରରେ ଏଥିର ଗୁରୁତ୍ୱ ଉପଲବ୍ଧି କରି ନିଷ୍ଠାପର ଭାବରେ ନିଜ ନିଜର ଦାୟିତ୍ୱ ସମ୍ପାଦନ କରି ପାରିଲେ ଆମେ ଆମର ଗୌରବମୟ ସଂସ୍କୃତିକୁ ପୁନରୁଦ୍ଧାର କରିପାରିବା । ଗୁରୁ ଦିବସ ପାଳନ ଅବସରରେ ଏହି ସଂକଳ୍ପ ହିଁ ଗୁରୁମାନଙ୍କ ପ୍ରତି ଗୁରୁ ଦକ୍ଷିଣା ।

# ଡଃ ରାଧାକ୍ରିଷ୍ଣନ୍‌ଙ୍କ ସ୍ମୃତିରେ

*** ଶ୍ରୀ ଭାସ୍କର ଶତପଥୀ**

ସେପ୍ଟେମ୍ବର ୫ ତାରିଖ ଗୁରୁ ଦିବସ ରୂପେ ଆମ୍ଭମାନଙ୍କ ସମ୍ମୁଖରେ ପ୍ରତିଭାତ। ପୁରପଲ୍ଲୀ, ସର୍ବଜ୍ଞ ଶିକ୍ଷାୟତନରେ ଜ୍ଞାନଗୁରୁ ବିଶିଷ୍ଟ ଶିକ୍ଷାବିତ୍ ଶ୍ରେଷ୍ଠ ଦାର୍ଶନିକ ପରମ ଆଧ୍ୟାତ୍ମବାଦୀ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମତିଥି ଗୁରୁଦିବସରୂପେ ପାଳନ କରାଯାଉଛି।

ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ସେପ୍ଟେମ୍ବର ୫ ତାରିଖ ୧୮୮୮ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ ନିକଟସ୍ଥ ଏକ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ଛାତ୍ରାବସ୍ଥାରୁ ତାଙ୍କର ପ୍ରତିଭା ଓ ମହନୀୟ ଗୁଣାବଳୀର ପରିଚୟ ମିଳିଥିଲା। ସେ ଦର୍ଶନ ଶାସ୍ତ୍ରରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ଏମ୍‌ଃ ଏଃ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ। ଶିକ୍ଷା ସମାପ୍ତି ପରେ ସେ ପ୍ରେସିଡେନ୍‌ସି କଲେଜ, କଲିକତା ବିଶ୍ୱବିଦ୍ୟାଳୟ ଏବଂ ପରେ ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଦର୍ଶନ ଶାସ୍ତ୍ରରେ ଅଧ୍ୟାପକରୂପେ ନିଜର ବିଦ୍‌ବତ୍ତା, ଚରିତ୍ରବତ୍ତା, ଆଦର୍ଶ ଶିକ୍ଷାଦାନ ଶୈଳୀ ଓ ଛାତ୍ରବତ୍ସଳତାରେ ସମସ୍ତଙ୍କୁ ମୁଗ୍ଧ କରିଥିଲେ। ବହୁ ବର୍ଷ ଶିକ୍ଷାକ୍ଷେତ୍ରରେ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇ ସେ ସ୍ୱୀୟ ପ୍ରତିଭା ଓ କର୍ତ୍ତବ୍ୟନିଷ୍ଠାର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି। ବିଦେଶରେ ରାଷ୍ଟ୍ରଦୂତରୂପେ ମଧ୍ୟ ନିଜର ଅସାଧାରଣ ଦକ୍ଷତା ଓ କର୍ତ୍ତବ୍ୟନିଷ୍ଠା ଯୋଗୁଁ ସେ ଭାରତର ସୁନାମ ଓ ମହିମା ପ୍ରଦର୍ଶନ କରି ସର୍ବଜନ ପୂଜ୍ୟ ହୋଇପାରିଛନ୍ତି।

**ଗୁରୁଦିବସ ଉପଲକ୍ଷେ :**

ଭଗବତ୍‌ପ୍ରେମୀ ରାଧାକ୍ରିଷ୍ଣନଙ୍କ ଜୀବନର ମୂଳମନ୍ତ୍ର ଥିଲା 'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ' ଏହି ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ ସେ କର୍ମଯୋଗର ମହନୀୟତା ପ୍ରଦର୍ଶନ କରିଛନ୍ତି। ଏହି ଦିବସ ଗୁରୁଶିଷ୍ୟ ଉଭୟଙ୍କ ପକ୍ଷେ ଆତ୍ମଚିନ୍ତନ ଓ ଆତ୍ମ ସମୀକ୍ଷାର ପ୍ରକୃତ ସମୟ। ଆଜି ଯେଉଁସବୁ ମହନୀୟ ଭାବଧାରା ମାନସପଟ୍ଟରେ ଜାଗ୍ରତ ହେଉଛି ତାହା ସବୁଦିନ ପାଇଁ ଉଜ୍ଜୀବିତ ରହିଲେ ଆମ୍ଭମାନଙ୍କର ଚଲାପଥ ସୁଗମ ହେବା ସଙ୍ଗେ ସଙ୍ଗେ ଜୀବନ ମହତ୍ ହେବ। ଗୁରୁଶିଷ୍ୟ ସମ୍ପର୍କ ଦିବ୍ୟ ଓ ଚିରନ୍ତନ। ଗୁରୁ ଶିଷ୍ୟ ପରସ୍ପର ପରିପୂରକ। ଗୋଟିକୁ ବାଦ୍ ଦେଲେ ଅନ୍ୟଟି ତିଷ୍ଠି ନ ପାରେ ଉଭୟଙ୍କ ସମ୍ପର୍କ ଦିବ୍ୟ ଓ ଚିରନ୍ତନ। ଜ୍ଞାନ ଆହରଣ ପାଇଁ ଶିଷ୍ୟର ସ୍ପୃହା ଓ ଉଦ୍ୟମ ଆବଶ୍ୟକ ଏବଂ ଗୁରୁ ନିଜର ଜ୍ଞାନାଲୋକ ଦ୍ୱାରା ଶିଷ୍ୟର ଅଜ୍ଞାନାନ୍ଧକାର ଦୂରୀକରଣରେ ବ୍ରତୀ ହେବା ତତୋଧିକ ଆବଶ୍ୟକ।

ସାମ୍ପ୍ରତିକ ପରିପ୍ରେକ୍ଷୀରେ ଗୁରୁ ଶିଷ୍ୟ, ଅଭିଭାବକ, ବୁଦ୍ଧିଜୀବୀ ଓ ଶିକ୍ଷାଜଗତର ଉଚ୍ଚ ଗୁରୁଜନ ବୃନ୍ଦ ଶିକ୍ଷାର ମାନ, ଅଗ୍ରଗତି, ପ୍ରସାର ଓ ବିକାଶ ଆଦି ଅନୁଧ୍ୟାନ ଏବଂ ସମୀକ୍ଷା କରି ସମାଜର ଉନ୍ନତିକଳ୍ପେ ପ୍ରୟାସୀ ହେଲେ ଆଧୁନିକ ଅଧଃପତିତ ସମାଜର କିଞ୍ଚିତ ଉପକାର ହୋଇପାରେ। ଆଜିର ଗୁରୁଦିବସରେ ଏହା ହିଁ ସମସ୍ତଙ୍କର ଧ୍ୟେୟ ହେଉ।

---

ପୂର୍ବତନ ଶିକ୍ଷକ,
ଭେଣ୍ଡେନ୍‌ସା କଲେଜିଏଟ୍ ସ୍କୁଲ।

# ଐକ୍ୟ ଚେତନା ଓ ଆଜିର ସମାଜ

* ଅଧ୍ୟାପକ ଡଃ ଶରତ ଚନ୍ଦ୍ର ରଥ

ଆମର ପଲ୍ଲୀ ଜୀବନ ହିଁ ଆମର ପ୍ରକୃତ ଜୀବନ । ପଲ୍ଲୀର ସଂସ୍କୃତି ହେଉଛି ଆମର ପ୍ରକୃତ ସଂସ୍କୃତି । ପଲ୍ଲୀର ସବୁଜ ଶସ୍ୟ କ୍ଷେତ୍ର, ଶ୍ୟାମଳ ବନଭୂମି ମନରେ ଭାବାନ୍ତର ଆଣେ, ହୃଦୟରେ ଭରିଦିଏ ଅପୂର୍ବ ପ୍ରଶାନ୍ତି । ପଲ୍ଲୀର ଶୋଭା ଭାବୁକ ପାଇଁ ଭାବନାର ଉପାଦାନ ଆଣିଦିଏ, କବି ଅନ୍ତରରେ ଭରିଦିଏ ସୀମାହୀନ ପୁଲକ ଓ ପବିତ୍ର ପ୍ରସନ୍ନତା । ପଲ୍ଲୀଭୂଇଁ ଆମର ଶୈଶବର ଶିଶୁଶଯ୍ୟା, କୈଶୋରର କ୍ରୀଡ଼ାଭୂଇଁ, ଯୌବନର ଫୁଲବନ ଓ ବାର୍ଦ୍ଧକ୍ୟର ବାରାଣସୀ ।

ପଲ୍ଲୀରେ ଜୀବନ ଧାରାକୁ ନିରୀକ୍ଷଣ କଲେ ଆମେ ଆମର ସାଂସ୍କୃତିକ ବିଭବ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିପାରିବା । ଆମ ସଂସ୍କୃତିର ମୂଳ ତତ୍ତ୍ୱଟି ହେଲା ବିଭୁତ୍ୱ ମଧ୍ୟରେ ଏକତ୍ୱ । ଅର୍ଥାତ୍ ରୂପ ଭିନ୍ନତା ଭିତରେ ଭାବର ଏକତା । ବହୁ ଜନ ହିତାୟ, ବହୁ ଜନ ସୁଖାୟ ହେଉଛି ଆମ ସଂସ୍କୃତିର ମର୍ମବାଣୀ । ଆମର ବେଶ ପୋଷାକ ଭିନ୍ନ ହେଲେ ମଧ୍ୟ ଖାଦ୍ୟପେୟର ରୁଚି ଭିନ୍ନ ହେଲେ ମଧ୍ୟ ସାଂସ୍କୃତିକ ଚେତନାରେ ଆମେ ଏକ ଓ ଅଭିନ୍ନ । ସମନ୍ୱୟର ସାର୍ଥକ ନମୁନା ଗ୍ରାମାଞ୍ଚଳରେ ଦେଖିବାକୁ ମିଳେ । ଗୋଟିଏ ଗାଁରେ ଶିବ ମନ୍ଦିର ଓ ବିଷ୍ଣୁ ମନ୍ଦିର ପାଖାପାଖି ଥିଲେ ମଧ୍ୟ ଉଭୟ ମନ୍ଦିରକୁ ଗ୍ରାମବାସୀମାନେ ସମାନ ଆନ୍ତରିକତାର ସହ ଯାଇଥାନ୍ତି ଏବଂ ଉଭୟ ମନ୍ଦିରର ସୁରକ୍ଷା ପାଇଁ ଯତ୍ନଶୀଳ ହୋଇଥାନ୍ତି । ସାଂସ୍କୃତିକ ଏକତାର ଅନ୍ୟତମ ନମୁନା ଗ୍ରାମାଞ୍ଚଳର ଲୋକମାନଙ୍କର ସାଧାରଣ ଚାଲିଚଳନିକୁ ଲକ୍ଷ୍ୟ କଲେ ଦେଖିବାକୁ ମିଳେ । ଗାଁ ପୋଖରୀ କୂଳରେ ସ୍ନାନ କଲାବେଳେ ଉଚ୍ଚାରିତ ହୁଏ :

> "ଗଙ୍ଗେଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ
> ନର୍ମଦେ ସିନ୍ଧୁ କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ।"

ସ୍ନାନ ଅବକାଶରେ ଭାରତବର୍ଷର ପୁଣ୍ୟତୋୟା ନଦୀମାନଙ୍କର ନାମ ଉଚ୍ଚାରଣ କରିବ । ସାଂସ୍କୃତିକ ସମନ୍ୱୟର ଏକ ବଳିଷ୍ଠ ନମୁନା । ଗଙ୍ଗା, ଯମୁନା, ନର୍ମଦା, ଗୋଦାବରୀ, କାବେରୀ ଆଦି ନଦନଦୀର ଚିତ୍ର ସମଗ୍ର ଭାରତର ଚିତ୍ର ଦେଇଥାଏ । ଗ୍ରାମାଞ୍ଚଳର ବ୍ୟକ୍ତିଟିଏ ଦିନ ଭିତରେ କିଛି ସମୟ ପାଇଁ ସାଂସ୍କୃତିକ ଏକତା ସମ୍ପର୍କରେ ସଚେତନ ହେବାର ପରିବେଶ ପାଇଥାଏ ।

ପଲ୍ଲୀ ଅଞ୍ଚଳରେ ଗୋଟିଏ ସ୍ଥାନରେ ଭିନ୍ନ ଭିନ୍ନ ଜୌକିକ ରୁଚିର ଲୋକେ ବାସ କରିଥାନ୍ତି । ପରସ୍ପର ମଧ୍ୟରେ ବୁଝାମଣା ଥିବା ହେତୁରୁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ସମ୍ଭବ ହୋଇଥାଏ । ପ୍ରତ୍ୟେକ ପରସ୍ପରକୁ ସ୍ୱବୃତ୍ତି ମାଧ୍ୟମରେ ସାହାଯ୍ୟ ଓ ସହଯୋଗ କରିଥାନ୍ତି । ମିଳିମିଶି ଚଳିବାର ପରମ୍ପରା ଓ ପରିବେଶ ଗ୍ରାମ୍ୟ ଜୀବନରେ ଯେପରି ରହିଛି, ତାହା ଅନ୍ୟତ୍ର ଦେଖିବାକୁ ମିଳେ ନାହିଁ । ଏପରିକି କେତେକ ପଲ୍ଲୀ ଅଞ୍ଚଳରେ ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଲୋକମାନେ ମିଳିମିଶି ବାସ କରିଥାନ୍ତି । ସେମାନଙ୍କ ଭିତରେ ସଦ୍‌ଭାବ ଓ ଶୁଭେଚ୍ଛା ଥାଏ, ଆନ୍ତରିକତା ସେମାନଙ୍କୁ ବାନ୍ଧି ରଖିଥାଏ । ଅନ୍ୟର ରୁଚିକୁ ସମ୍ମାନ, ଅନ୍ୟର ମତକୁ ଗୁରୁତ୍ୱ ଦେବା ଭିତରେ ଯେଉଁ ଉଦାରତା ଏବଂ ସହନଶୀଳତା ଥାଏ ତାହା ପଲ୍ଲୀ ଅଞ୍ଚଳରେ ଅଧିକ ଭାବରେ ଉପଲବ୍ଧି କରାଯାଏ । ସାଂସ୍କୃତିକ ଏକତାର ଏହା ଏକ ବିଶେଷ ନମୁନା କହିଲେ ଚଳେ । ଏବେ ମଧ୍ୟ ଖୋର୍ଦ୍ଧା ସବ୍‌ଡିଭିଜନର କେତେକ ଗାଁରେ ଦଶହରା ଦିନ ଗ୍ରାମର ଦଳବେହେରା ଉଭୟ ହିନ୍ଦୁ ଓ ମୁସଲମାନ ପାଇକମାନଙ୍କୁ ସଜାଇ ଦଶହରା ପଡ଼ିଆକୁ ପଟୁଆର କରି ଆଣିଥାଆନ୍ତି । କେତେକ ଗ୍ରାମରେ ଦୋଳଯାତ୍ରା ବେଳେ ରାଧାଗୋବିନ୍ଦ ହିନ୍ଦୁ ଓ ମୁସଲମାନ ଉଭୟଙ୍କ ଦୁଆରକୁ ଯାଇ ଖେଚେଡ଼ୀ ଭୋଗ ଖାଇବାର ପରମ୍ପରା ଏବେ ମଧ୍ୟ ରହିଛି । ପ୍ରକୃତ ପକ୍ଷେ ସାଂସ୍କୃତିକ ଏକତାର ମୂଳ ତତ୍ତ୍ୱଟି ରହିଛି ମନରେ । ପାରସ୍ପରିକ ସଦିଚ୍ଛା ଓ ସହାନୁଭୂତି ସାଂସ୍କୃତିକ ଏକତା ପାଇଁ ଅପରିହାର୍ଯ୍ୟ, ସର୍ବୋପରି ମାନବିକତା ହେଉଛି ସାଂସ୍କୃତିକ ଏକତାର ମୌଳିକ ନିର୍ଯ୍ୟାସ ।

ପଲ୍ଲୀ ଅଞ୍ଚଳରେ ସତ୍ୟନାରାୟଣ ପୂଜା ଅଧିକ ଭାବରେ ଅନୁଷ୍ଠିତ ହୁଏ । ଏଥିରେ ପଢ଼ା ଯାଉଥିବା ପାଲା ଗୀତରେ ସତ୍ୟପୀରଙ୍କର ମହିମା ଗାନ କରାଯାଏ । ହିନ୍ଦୁ ଓ ମୁସଲମାନ ଉଭୟ ସଂସ୍କୃତିର ସମନ୍ୱୟ ଏଥିରେ ଲକ୍ଷ୍ୟ କରିହୁଏ । ମୋଟରେ ଓଡ଼ିଶାରେ ୨୦ଟି ପାଲା କାହାଣୀ ପ୍ରତିଷ୍ଠା ଅର୍ଜନ କରିଛି । ସେଥିରୁ ୧୬ଟି କବି କର୍ଣ୍ଣ ରଚନା କରିଛନ୍ତି । ଏଥିରେ ବୋଲା ଯାଉଥିବା ଗୀତରେ ଓଡ଼ିଆ, ବଙ୍ଗଳା ଓ ପାର୍ସୀ ଭାଷାରେ ମିଶ୍ରିତ ରୂପ ଦେଖାଯାଏ । ଉଦାହରଣ ସ୍ୱରୂପ ମଦନ ସୁନ୍ଦର ପାଲାରେ ନାୟକ ମଦନ ସୁନ୍ଦର ତା'ର ନାୟିକା କୁନ୍ତଳାକୁ କହିଛି ଯେ ତୋର ଯଦି ପୁତ୍ର ସନ୍ତାନ ଜନ୍ମ ହେବ, ତେବେ ତାକୁ ଓଡ଼ିଆ, ବଙ୍ଗଳା ଓ

ପାର୍ଶୀ ଭାଷା ଶିଖାଇବୁ । ସତ୍ୟନାରାୟଣ ପାଲାରେ କୋରାନ୍ ଓ ପୁରାଣକୁ ସମାନ ମର୍ଯ୍ୟାଦା ଦିଆଯାଇଛି । ଜନ୍ମ ପାଲାରେ ଉଲ୍ଲେଖ ରହିଛି :

"ରାମ ରହିମ୍ ଜାନ କୋରାନ୍ ପୁରାନେ,
ଦେଖିବେ କେମନ ଲୋକମାନେ କି ନାମାନେ ।"

ଯିଏ ମୁସଲମାନମାନଙ୍କର ପୀର, ସେ ହିନ୍ଦୁମାନଙ୍କର ହରି ବୋଲି ଏଥିରେ ଉଲ୍ଲେଖ କରାଯାଇଛି । ଦୁଇ ସମ୍ପ୍ରଦାୟ ଭିତରେ ମାନସିକ ଏକତା ଆଣିବା ପାଇଁ ଏହି ପାଲାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପାଲାରେ ପୁଣି ଶୁଣିବାକୁ ମିଳେ :

'ଅଦ୍ଭୁତ ପୀରେର ମାୟା କେ ବଲିତେ ପାରି
ମୁସଲମାନ ବଲେ ପୀର ହିନ୍ଦୁ ବଲେ ହରି ।"

ସତ୍ୟପୀରଙ୍କର ଉପାସନା ପୁରୀ ଜିଲ୍ଲାର କାଇପଦରଠାରେ କରାଯାଏ । ଏହି ପୀଠକୁ ଉଭୟ ହିନ୍ଦୁ ଓ ମୁସଲମାନ ଭକ୍ତ ଯାଇଥାନ୍ତି ଓ ପ୍ରସାଦ ପାଇଥାନ୍ତି, ସାଂସ୍କୃତିକ ଏକତାର ଯେ ଏହା ଏକ ବଳିଷ୍ଠ ଚିହ୍ନ, ଏଥିରେ ସନ୍ଦେହ ନାହିଁ ।

ସାଂସ୍କୃତିକ ଏକତା ପାଇଁ ପଲ୍ଲୀ ଅଞ୍ଚଳରେ ହେଉଥିବା ମେଳା ଓ ମେଳଣ ଏକ ଏକ ପବିତ୍ର ତୀର୍ଥ କହିଲେ ଚଳେ । ଏହି ମେଳଣରେ ପାଖାପାଖି ଗାଁରୁ ଠାକୁରମାନେ ବିମାନରେ ଆସି ଏକତ୍ରିତ ହୁଅନ୍ତି, ଭକ୍ତ ଓ ଦର୍ଶକମାନଙ୍କର ସମାଗମ ହୁଏ । ମେଳଣ ପଡ଼ିଆର ଭିନ୍ନ ଭିନ୍ନ ସ୍ଥାନରେ ଏକ ସମୟରେ ରାମଲୀଳା, କୃଷ୍ଣଲୀଳା, ପାଲା, ଦାସକାଠିଆ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମ ସବୁ ଅନୁଷ୍ଠିତ ହେଲେ ମଧ୍ୟ ଦର୍ଶକମାନଙ୍କ ଭିତରେ ବା ଆୟୋଜକମାନଙ୍କ ଭିତରେ ବାଦ ବିସମ୍ବାଦ ନଥାଏ ।

ଆମ ସାଂସ୍କୃତିକ ପ୍ରବାହର ଅନ୍ୟ ଏକ ବିଶିଷ୍ଟ ଅଙ୍ଗ ହେଉଛି ଆଦିବାସୀ ସଂସ୍କୃତି, ଦାରୁପୂଜା, ବୃକ୍ଷପୂଜା, ସର୍ପପୂଜା ଓ ମାଟିପୂଜା ଇତ୍ୟାଦି ବହୁ ବିଭବ ଭିତରେ ଆର୍ଯ୍ୟ ସଂସ୍କୃତି ଓ ଆଦିବାସୀ ସଂସ୍କୃତିର ସମନ୍ୱୟ ଘଟିଛି । ଶ୍ରୀଜଗନ୍ନାଥ ସଂସ୍କୃତିରେ ଉଭୟ ଆର୍ଯ୍ୟ ଓ ସବର ସଂସ୍କୃତିର ମଧୁର ମିଳନ ଦେଖିବାକୁ ମିଳେ । ଜଗନ୍ନାଥ ଶବ୍ଦଟିର ବ୍ୟୁତ୍ପତ୍ତି ଶବର ଭାଷାରୁ ହୋଇଛି ବୋଲି କେତେକ ଭାଷାବିତ୍ ମତ ଦିଅନ୍ତି । ଓଡ଼ିଶାରେ ଆର୍ଯ୍ୟ ଓ ଆଦିବାସୀ ସଂସ୍କୃତିର ସମନ୍ୱୟ ଅତୀତରେ ସଙ୍ଗଠିତ ହୋଇଥିଲା ବୋଲି ଇତିହାସ କହେ । ଖାରବେଳ, କପିଳେନ୍ଦ୍ର ଦେବ ଓ ନରସିଂହ ଦେବଙ୍କ ବିଜୟ ଗୌରବରେ ପାଇକମାନଙ୍କର ଯେତିକି ଅବଦାନ ରହିଛି, କନ୍ଧ, ଭୂୟାଁ, ଜୁଆଙ୍ଗମାନଙ୍କର ସେତିକି ଅବଦାନ ରହିଛି । ଗଜପତିମାନଙ୍କର ସେନାବାହିନୀରେ ଉଭୟ ଆର୍ଯ୍ୟ ପାଇକ ଓ ଆଦିବାସୀ ସୈନ୍ୟ ଅତୀତରେ ରହିଥିଲେ ।

ମାଟି ମାଆର ସମ୍ମାନ ରଖିବା ପାଇଁ ପୁରବାସୀ ଓ ଗିରିବାସୀ ସମସ୍ତେ ଏକ ମନ ଓ ଏକ ପ୍ରାଣ ହୋଇ ଅତୀତରେ ଆଗେଇ ଆସିଛନ୍ତି । ଆବଶ୍ୟକ ବେଳେ ସେମାନେ ଏକାଠି ବସିଛନ୍ତି, ଏକାଠି ଆଲୋଚନା କରିଛନ୍ତି, ଭବିଷ୍ୟତର କର୍ମ ପନ୍ଥା ନିର୍ଦ୍ଧାରଣ କରିଛନ୍ତି ।

ବିଭିନ୍ନ ଦିଗରୁ ବିଚାର କଲେ ଏ କଥା ସ୍ପଷ୍ଟ ହେବ ଯେ ଆମର ପଲ୍ଲୀସଂସ୍କୃତି ଏକ ସମନ୍ୱିତ ସଂସ୍କୃତି, ବିଭିନ୍ନ ଧର୍ମ, ବିଭିନ୍ନ ଆଚାର ପଦ୍ଧତି, ବିଭିନ୍ନ ଗୋଷ୍ଠୀ ଓ ସମ୍ପ୍ରଦାୟର ସମନ୍ୱୟରେ ଆମର ପଲ୍ଲୀ ଜୀବନ ଧାରା ଗଠିତ । ଅନ୍ୟ ଭାଷାରେ କହିଲେ ପଲ୍ଲୀ ଜୀବନ ଆମର ବହୁ ମତ, ବହୁ ସମ୍ପ୍ରଦାୟର ଚିନ୍ତା ଓ ଚେତନା ଦ୍ୱାରା ପରିପୁଷ୍ଟ ଏକ ମହା ମିଳନର ତୀର୍ଥ ।

---

ଓଡ଼ିଆ ବିଭାଗ,
ବାଣୀବିହାର, ଭୁବନେଶ୍ୱର-୪ ।



ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ରାଜଭବନଠାରେ ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରୁଛନ୍ତି ।

# ଗଣନାଥ

✽ ରେଣୁକା ଶ୍ରୀଚାନ୍ଦନୀ

ସିନ୍ଦୂରାରୁଣ ମନ୍ଦାର ପ୍ରିୟ ମହାବିନାୟକ ଗଣନାଥ ହେଲେ ଗାଣପତ୍ୟ ସମ୍ପ୍ରଦାୟର ଆରାଧ୍ୟ ଦେବତା । ହିନ୍ଦୁ ଧର୍ମ ସଂସ୍କୃତିରେ ଖର୍ବକାୟ ସ୍ଥୂଳତନୁ ପ୍ରଳମ୍ବ ଜଠର ଗଜମୁଖ ଏହି ଦେବତାଙ୍କର ଏକ ବିଶିଷ୍ଟ ସ୍ଥାନ ଅଛି ।

ଶ୍ରୀଗଣେଶଙ୍କର ବୈଶିଷ୍ଟ୍ୟ ହେଲା ତାଙ୍କର ଅଦ୍ଭୁତାକୃତି । ମାନବାକୃତିର ଖର୍ବ ଶରୀରରେ ଗଜ ମସ୍ତକର ସଂଯୋଜନା ତାଙ୍କର ରୂପକୁ ବୈଚିତ୍ର୍ୟମୟ କରିଛି । ଏହାର କାରଣ ? ବେଦରେ ଏହାର ଉତ୍ତର ନାହିଁ । ବୈଦିକ ଋଷିଗଣ ଶ୍ରୀଗଣନାଥଙ୍କୁ ସ୍ତୁତି ଅବଶ୍ୟ କରିଛନ୍ତି ମାତ୍ର ତାଙ୍କର ଧ୍ୟାନମନ୍ତ୍ର ରଚନା କରିଛନ୍ତି ପୁରାଣକାରମାନେ ।

ଆମର ବିଭିନ୍ନ ପୁରାଣରେ ଶ୍ରୀଗଣେଶଙ୍କ ସମ୍ବନ୍ଧରେ ବିଭିନ୍ନ ଉପାଖ୍ୟାନମାନ ବର୍ଣ୍ଣିତ ହୋଇଅଛି । ମାତ୍ର ଭକ୍ତିର ସହିତ ଯଦି ଯୁକ୍ତିକୁ ଯୋଗ କରାଯାଏ ତେବେ ଏଥିମଧ୍ୟରେ ଅଧିକାଂଶ ଉପାଖ୍ୟାନ ହିଁ ଗ୍ରହଣ ଯୋଗ୍ୟ ନୁହେଁ । ଅବଶ୍ୟ ଏଥି ମଧ୍ୟରେ ବ୍ରହ୍ମବୈବର୍ତ୍ତ ପୁରାଣ ରଚିତ ଉପାଖ୍ୟାନଟିର ବିଶେଷ ପ୍ରସିଦ୍ଧି ଅଛି । ତେବେ ଏହି ଉପାଖ୍ୟାନଟିରେ ଗଣେଶ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ଯଥାଯଥ ଉତ୍ତର ମିଳେ ନାହିଁ ।

ଏହି ଆଖ୍ୟାୟିକାଟି ଅନୁଯାୟୀ "ଦେବୀ ପାର୍ବତୀ ବାସୁଦେବଙ୍କୁ ପୂଜା କରି ଏକ ପରମ ସୁନ୍ଦର ପୁତ୍ର ଲାଭ କରିଥିଲେ । ଏହି ପୁତ୍ରର ଜନ୍ମୋତ୍ସବରେ ଗ୍ରହ ଦେବତା ଶନି ଆଶୀର୍ବାଦ ଉଦ୍ଦେଶ୍ୟରେ ଶିଶୁ ପୁତ୍ରକୁ ଚାହିଁବା କ୍ଷଣି ଶିଶୁର ମସ୍ତକ ଛିନ୍ନ ହୋଇ ଆକାଶରେ ଅଦୃଶ୍ୟ ହୋଇଗଲା । ପାର୍ବତୀଙ୍କ ବେଦନା ଦେଖି ଭଗବାନ ବିଷ୍ଣୁ ଉତ୍ତର ଦିଗକୁ ମସ୍ତକ କରି ଶୋଇଥିବା ଏକ ଶ୍ୱେତହସ୍ତୀର ମସ୍ତକ ଆଣି ଶିଶୁର ଶରୀରରେ ଆରୋପଣ କରିବାରୁ ଶିଶୁ ପୁନର୍ଜୀବିତ ହୋଇ ଉଠି ବସିଲା । ଏହି ଉପାଖ୍ୟାନଟି ଶ୍ରୀଗଣେଶଙ୍କର ଗଜମସ୍ତକର କାରଣ ଅବଶ୍ୟ ଜଣେଇଛି ମାତ୍ର ତାଙ୍କର ଅଦ୍ଭୁତାକୃତିର ତାତ୍ପର୍ଯ୍ୟ କିଛି ବ୍ୟାଖ୍ୟା କରିନାହିଁ । ଉପାଖ୍ୟାନଟି ଅନୁଯାୟୀ, ଦେବୀ ପାର୍ବତୀ ବାସୁଦେବଙ୍କୁ ପୂଜା କରି ଏକ ପରମ ସୁନ୍ଦର ପୁତ୍ର ଲାଭ କରିଥିଲେ । ଏହି ପରମ ସୁନ୍ଦର ପୁତ୍ର ନିଶ୍ଚୟ ଖର୍ବ ସ୍ଥୂଳ ତନୁ ଲମ୍ବୋଦର ନ ଥିଲେ । ଏହି ଆଖ୍ୟାୟିକାରେ ଶ୍ରୀଗଣେଶଙ୍କର ଗଣେଶ ନାମକରଣର ମଧ୍ୟ ଯଥାଯଥ ଉତ୍ତର ମିଳେନାହିଁ । ଗଣେଶ ଅର୍ଥ "ଗଣ" ମାନଙ୍କର "ଈଶ" ବା "ପତି" । ମାତ୍ର ବାସୁଦେବ ପାର୍ବତୀଙ୍କୁ ଏକ "ଗଣପୁତ୍ର" ଦେଇ ନଥିଲେ । ତେବେ ତାଙ୍କୁ ଗଣମାନଙ୍କର ପ୍ରଧାନ କିପରି ଧରାଯିବ । ଗଣେଶଙ୍କର ଅପର ଏକ ନାମ ହେଲା "ବିନାୟକ", ଅର୍ଥାତ୍ ନାୟକ ବିନା ଯାହାର ଜନ୍ମ । ମାତ୍ର ଏହି ଉପାଖ୍ୟାନଟି ଅନୁଯାୟୀ ଶ୍ରୀଗଣେଶ ହେଲେ ସ୍ୱୟଂ ମହାନାୟକ ବାସୁଦେବଙ୍କ ସୃଷ୍ଟି । ସୁତରାଂ ତାଙ୍କୁ "ବିନାୟକ" କିପରି କୁହାଯିବ ?

ଗଣେଶ ସମ୍ବନ୍ଧୀୟ ଶିବପୁରାଣ ରଚିତ ଉପାଖ୍ୟାନଟି କିନ୍ତୁ ଅନ୍ୟାନ୍ୟ ଉପାଖ୍ୟାନଗୁଡ଼ିକ ଅପେକ୍ଷା ଅଧିକ ଯୁକ୍ତିଗ୍ରାହ୍ୟ । ଉପାଖ୍ୟାନଟି ସଂକ୍ଷେପରେ କହିଲେ, "ଦିନେ ଦେବୀ ପାର୍ବତୀ ଶିବଙ୍କ "ଗଣ"ମାନଙ୍କ ପରି ନିଜ ପାଇଁ ଏକ "ଗଣ" ସୃଷ୍ଟି କରି ତାକୁ ପୁତ୍ର ରୂପରେ ଗ୍ରହଣ କଲେ । ଏହି "ଗଣପୁତ୍ର"କୁ ନିଜ ପ୍ରାସାଦ ଦ୍ୱାର ଜଗି ରହିବାକୁ କହି ଦେବୀ ସ୍ନାନ କରିବାକୁ ଗଲେ । ଏହି ସମୟରେ ଶିବ ଆସି ଉପସ୍ଥିତ ହେଲେ । ମାତ୍ର ପ୍ରାସାଦ ପ୍ରବେଶୋଦ୍ୟତ ଶିବଙ୍କ ପଥରୋଧ କରି ଛିଡ଼ାହେଲେ ଗିରିଜାନନ୍ଦନ । ଫଳରେ ଦେବତାମାନଙ୍କ ସହ ବାଳକର ମହାସଂଗ୍ରାମ ଆରମ୍ଭ ହେଲା । ଯୁଦ୍ଧ କରୁକରୁ ବାଳକ ବିଷ୍ଣୁଙ୍କୁ ଭୂପତିତ କରିଦେଲେ ।

ଏହା ଦେଖି ଶିବ ନିଜର ତ୍ରିଶୂଳ ନିକ୍ଷେପ କଲେ । ବାଳକ ଏଥିପାଇଁ ପ୍ରସ୍ତୁତ ନଥିଲା, ଫଳରେ ନିକ୍ଷିପ୍ତ ଶୂଳରେ ବାଳକର ମସ୍ତକ ଛିନ୍ନଭିନ୍ନ ହୋଇଗଲା । କ୍ରୋଧାନ୍ୱିତା ପାର୍ବତୀଙ୍କୁ ଶାନ୍ତ କରିବା ପାଇଁ ଶିବ ଉତ୍ତର ଦିଗରୁ ଏକ ଶ୍ୱେତହସ୍ତୀର ମସ୍ତକ ଆଣି ବାଳକର ଶରୀରରେ ଆରୋପଣ କରି ତାକୁ ଜୀବନ ଦାନ କଲେ । ମାତ୍ର ବାଳକ ଜୀବନ ପାଇବା କ୍ଷଣି ଦେବତାମାନଙ୍କୁ ଆକ୍ରମଣ କରି ଦନ୍ତାଘାତରେ ଅସ୍ତବ୍ୟସ୍ତ କରିଦେଲେ । ଏଥର ମାତା ପାର୍ବତୀ ଆସି ପୁତ୍ରକୁ ଶାନ୍ତ କଲେ ଓ ତା'ର ଲଲାଟରେ ସିନ୍ଦୂରର ତଳସିନ୍ଦୁ ଆଙ୍କିଦେଲେ ।

ଏହି ଉପାଖ୍ୟାନଟିରେ ଶ୍ରୀଗଣେଶଙ୍କର ଗଜମସ୍ତକର କାରଣ ଜଣାଯାଏ । ଅଦ୍ଭୁତାକୃତିର ଉତ୍ତର ମଧ୍ୟ ମିଳେ । ପୌରାଣିକ ମତରେ ଶିବଙ୍କ ଅନୁଚରମାନଙ୍କୁ "ଗଣ" କୁହାଯାଏ ।

ଉପାଖ୍ୟାନଟି ଶ୍ରୀଗଣେଶଙ୍କର ବିଭିନ୍ନ ନାମକରଣର ମଧ୍ୟ ଯଥାଯଥ ସମାଧାନ କରିଅଛି । ଶିବ, ପାର୍ବତୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ପାର୍ବତୀ ତନୟଙ୍କୁ ନିଜର ପ୍ରଧାନ ଅନୁଚର ନିଯୁକ୍ତ କରିଥିଲେ । ଅର୍ଥାତ୍ ଶ୍ରୀଗଣନାଥ ହୋଇଥିଲେ "ଗଣ" ମାନଙ୍କର ପ୍ରଧାନ ବା ପତି ବା ଈଶ । ସେଥି ପାଇଁ ସେ ଗଣପତି ବା ଗଣେଶ । ଶିବାନୁଚରମାନଙ୍କୁ "ପ୍ରମଥ" ଓ ଗଣେଶଙ୍କୁ ସେଥିପାଇଁ "ପ୍ରମଥାଧିପ" କୁହାଯାଏ ।

---

୯୬, ସତ୍ୟନଗର,
ଭୁବନେଶ୍ୱର ।

# ସ୍ୱର୍ଗ ଯାତ୍ରା

(ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କ ସ୍ମୃତିରେ

* ଅଶୋକ କୁମାର ପାଢ଼ୀ

ନିରନ୍ଧ୍ର ତମସାଛନ୍ନ ଉତ୍କଳ ଆକାଶେ
ଉଇଁଥିଲ ଦୀପ୍ତିମନ୍ତ
ତେଜସ୍ୱୀ ଭାସ୍କର

ହେ ବିନାୟକାଚାର୍ଯ୍ୟ !/ଶିକ୍ଷାର ଆଲୋକେ ଉଦ୍‌ଭାସିତ କରିଥିଲ/
ଜନ୍ମ ମାଟିର ସ୍ତୁତଶାଳୀ ଘର

ଆଜୀବନ ଦେଶ ସେବା ବ୍ରତକୁ ଆଚରି
ଇତିହାସେ ଲେଖିଗଲ ଅଲିଭା ଅକ୍ଷର ।

ଅସୀମ ଧୈର୍ଯ୍ୟ ସାହାସ କରି ଏକ ଠୁଳ
ବଜ୍ରୁ ହୁଁ କଠିନ ଥିଲ ପଦ୍ମରୁ କୋମଳ

ପୁଣ୍ୟ ଜନ୍ମ ଭୂମିର ବିକାଶ ନିମନ୍ତେ
ଆସିଥିଲ ସ୍ୱର୍ଗରୁ ତୁମେ ଦେବଦୂତ ହୋଇ

କିନ୍ତୁ ହାୟ ! ଖୁଲିଗଲ ପାଇ ତୁମେ ସେପାରି ଡାକରା
କୋଟି କୋଟି ନେତ୍ରୁ ବହେ ଅଶ୍ରୁର ଶ୍ରାବଣୀ

କୋଟି–କୋଟି କଣ୍ଠେ ବାଜେ ବିଷାଦ ରାଗିଣୀ
"ନାହାନ୍ତି ମାଷ୍ଟରେ ଆଉ"–କି କରୁଣ କାହାଣୀ !

ସ୍ୱାଧୀନ ଉତ୍କଳେ ନିଷ୍ଠାପର ଦ୍ରୋଣାଚାର୍ଯ୍ୟ ପରି
କର୍ମମୟ ଜୀବନରେ ରଚିଗଲ ଶାଶ୍ୱତ କୀରତି ।

ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱ କାଳ ରହି ବିଜଡ଼ିତ
ଶିକ୍ଷା, ରାଜନୀତି, କଳା, ସମାଜ ସଂସ୍କୃତି
ପ୍ରତ୍ୟେକ କ୍ଷେତ୍ରରେ ଦେଖାଇଲ ଅପୂର୍ବ ଶକତି ।

ହେ ଚିର ସ୍ମରଣୀୟ, ହେ ପରମ ପୂଜ୍ୟ
ହେ ମହାମାନବ ତବ ଚରଣ ଯୁଗଳେ
ଘେନ ଅର୍ଘ୍ୟ ପୁଷ୍ପାଞ୍ଜଳି ପ୍ରଣତି ମୁଁ ଢାଳେ ।

ପାଟରାସାହି, କଲେଜ ସ୍କୋୟାର,
କଟକ–୩

# ନବାନ୍ନ ଭକ୍ଷଣ

* ଶ୍ରୀ ରାମ ପ୍ରସାଦ ପୁରୋହିତ

ତୈତ୍ତିରୀୟ ଉପନିଷଦରେ କୁହା ଯାଇଛି–

"ଅନ୍ନଂ ବ୍ରହ୍ମେତି ବ୍ୟଜାନାତା
ଅନ୍ନାଦେବ ଖଲ୍ୱିମାନି ଭୂତାନି ଜାୟନ୍ତେ
ଅନ୍ନେନ ଜାତାନି ଜୀବନ୍ତି
ଅନ୍ନଂ ପ୍ରୟନ୍ତ୍ୟଭି ସଂବିଶନ୍ତୀତି ।"

ଅର୍ଥାତ୍ ଅନ୍ନର ଅନ୍ୟନାମ ହେଉଛି ବ୍ରହ୍ମ । ପ୍ରତ୍ୟେକ ଏଇ ଅନ୍ନରୁ ଜାତ ହୁଅନ୍ତି, ଅନ୍ନଯୋଗୁ ଜୀବନ ଧାରଣ କରନ୍ତି ଏବଂ ମୃତ୍ୟୁ ପରେ ଅନ୍ୟମାନଙ୍କ ପାଇଁ ସେମାନେ ଅନ୍ନ ହୋଇଯାଆନ୍ତି ।ଏଣୁ ଅନ୍ନର ଗୁରୁତ୍ୱ ପ୍ରତ୍ୟେକଙ୍କ ଜୀବନରେ ଉପଲବ୍ଧି କରି ହୁଏ । ଏହା ଜୀବନ ଧାରଣାର ମାଧ୍ୟମ, ଆନନ୍ଦର ଉତ୍ସ ଏବଂ ଆସ୍ଥାର ଅଙ୍ଗ ।

ଅନ୍ନ ପୂଜା ବା ଶସ୍ୟ ପୂଜା ଭାରତୀୟ ଜନ ଜୀବନରେ ବହୁ କାଳରୁ ପ୍ରଭାବ ବିସ୍ତାର କରି ଆସିଛି । ଅନ୍ନଯୋଗୁ ପ୍ରତ୍ୟେକ ପ୍ରାଣୀ ସୃଷ୍ଟିକର୍ତ୍ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜଣାଏ । ଏଣୁ ସୃଷ୍ଟିକର୍ତ୍ତାଙ୍କ ପ୍ରତି ନିଜ ମନର ଗଭୀର କୃତଜ୍ଞତା ଜଣାଇବା ଉଦ୍ଦେଶ୍ୟରେ ଏଭଳି ଏକ ପର୍ବର କଳ୍ପନା ମନୀଷ କରିଛି । ଭାରତର ପ୍ରାୟ ସବୁ ଅଞ୍ଚଳରେ ଶସ୍ୟ ପୂଜା ପାଳିତ ହେଉଥିବାର ଦେଖାଯାଏ । କିନ୍ତୁ ପଶ୍ଚିମ ଓଡ଼ିଶାର ଏହି ନବାନ୍ନ ଭକ୍ଷଣ ପାଳନର ଏକ ବିଶେଷତ୍ୱ ରହିଛି ।

ଅନ୍ନର ସୃଷ୍ଟିକର୍ତ୍ତାଙ୍କୁ ପବିତ୍ର ମନରେ ଚିନ୍ତନ କରିବା ପାଇଁ ଏଭଳି ପର୍ବର ଆରମ୍ଭ, ଏଥିରେ ସନ୍ଦେହ ନାହିଁ । ଅନ୍ୟ ପର୍ବପର୍ବାଣି ପରି ଏହି ପର୍ବର ମଧ୍ୟ ପୂଜାବିଧି ରହିଛି । 'ନୁଆଖାଇ'ର ମହତ୍ତ୍ୱ ସାମାଜିକ ସ୍ତରରେ ଉପଲବ୍ଧି କରି ହୁଏ । ଭାରତ ତଥା ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ବିଭିନ୍ନ ସମୟରେ ଏହି ପର୍ବ ପାଳିତ ହେବାର ମଧ୍ୟ ଦେଖାଯାଏ । କିନ୍ତୁ ପଶ୍ଚିମ ଓଡ଼ିଶା ପରି ଏହା ଏତେ ବ୍ୟାପକ ଓ ସାମୂହିକ ଭାବରେ ପାଳିତ ହେବାର ଦେଖାଯାଏ ନାହିଁ । କେତେକ ଅଞ୍ଚଳରେ 'ବିଜୟାଦଶମୀ' ଦୀପାବଳୀ କିମ୍ବା ଏକ ଶୁଭ ଦିନ ଦେଖି 'ନବାନ୍ନ ଭକ୍ଷଣ' କରିବାର ବିଧି ରହିଛି । କିନ୍ତୁ ପଶ୍ଚିମ ଓଡ଼ିଶାରେ ନୁଆଖାଇ ଭାଦ୍ରବ ମାସରେ ହିଁ ପାଳିତ ହୋଇ ଥାଏ ।

ସ୍ୱୟଂ ଭଗବାନ କହିଛନ୍ତି– ମୁଁ ହିଁ ଅନ୍ନ-ମୁଁ ହିଁ ଅନ୍ନ.........ସେହି ଅନ୍ନର ମୁଁ ହିଁ ଉପଭୋକ୍ତା.......ମୁଁ ହିଁ ଉପଭୋକ୍ତା.......” ଆବାହମାନ କାଳରୁ ହିଁ ଅନ୍ନକୁ ଭଗବାନଙ୍କର ଅନ୍ୟରୂପ ଭାବରେ କଳ୍ପନା କରାଯାଇଛି । ଭଗବତ୍ ଚିନ୍ତନ ହିଁ ପର୍ବପର୍ବାଣି ମାଧ୍ୟମରେ ସାଧିତ ହୋଇଥାଏ । ଏହି ଚିନ୍ତନ ବ୍ୟକ୍ତିଗତ ସ୍ତରରେ ସୀମିତ ନ ରହି ସାମାଜିକ ସ୍ତରକୁ ବିସ୍ତାର କରିଥାଏ । ଏଭଳି ଏକ ଦର୍ଶନର ଆଧାର ଉପରେ ହିଁ ପ୍ରତିଷ୍ଠିତ 'ନୁଆଖାଇ' ପର୍ବ ।

ତେବେ ଭାଦ୍ର ମାସରେ ହିଁ ଏହି ପର୍ବ ପାଳନ କରିବାର କି ଉଦ୍ଦେଶ୍ୟ ? ବୋଧ ହୁଏ ଋଷୀ ମନେକରେ ଯେ ନିଜର ପରିଶ୍ରମର ଫଳକୁ ଅନ୍ୟମାନେ ଉପଭୋଗ କରିବା ପୂର୍ବରୁ ସୃଷ୍ଟିକର୍ତ୍ତାଙ୍କୁ ଅର୍ପଣ କରି ସେହି ପ୍ରସାଦକୁ ନିଜେ ସେବନ କରିବା ଉଚିତ । ଯେହେତୁ ଭାଦ୍ର ମାସରେ ଧାନଗଛ ଫଳ ଧରିବା ଆରମ୍ଭ କରିଥାଏ, ଏଣୁ ଏହି ନୂତନ ଶସ୍ୟକୁ ଅଭିନନ୍ଦନ ଜଣାଇ ସୃଷ୍ଟିକର୍ତ୍ତା ତଥା ଦେବାଦେବୀଙ୍କ ଚରଣ ତଳେ ଅର୍ପଣ କରି ପ୍ରସାଦ ସେବନ ପୂର୍ବକ ଭବିଷ୍ୟତର ଶୁଭ ଚିନ୍ତନ କରିବା ଏହି ପର୍ବର ଉଦ୍ଦେଶ୍ୟ ।

ଏହି ପର୍ବ ପାଳନ ପାଇଁ ଏହି ବ୍ରହ୍ମ ମୁହୂର୍ତ୍ତ ସ୍ଥିର କରାଯାଏ । ଏହି ଲଗ୍ନ ନିଜ ଇଷ୍ଟ ଦେବଦେବୀଙ୍କ ନାମରେ ପ୍ରାୟତଃ କରାଯାଇଥାଏ । କିନ୍ତୁ ଶତ ବର୍ଷଠାରୁ ସମଲେଶ୍ୱରୀଙ୍କ ନାମରେ ଶୁଭଲଗ୍ନ ସ୍ଥିର କରାଯାଇ ପ୍ରତିବର୍ଷ ଭାଦ୍ର ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ସମଗ୍ର ପଶ୍ଚିମ ଓଡ଼ିଶାରେ 'ନୁଆଖାଇ' ପର୍ବ ପାଳିତ ହୋଇ ଆସୁଅଛି ।

ପଶ୍ଚିମ ଓଡ଼ିଶାରେ ଏହି ପର୍ବ ପାଳନର ବିଧି ମଧ୍ୟ ଅନ୍ୟ ଅଞ୍ଚଳ ଅପେକ୍ଷା ସ୍ୱତନ୍ତ୍ର । ଦେବଦେବୀଙ୍କୁ 'ନବାନ୍ନ' ଅର୍ପଣ ପରେ ପ୍ରସାଦ ସେବନ ପ୍ରଥମେ ପରିବାରର ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ଦ୍ୱାରା ହୋଇଥାଏ । ପରିବାରର ଯିଏ ଯେଉଁଠି ଥାଉନା କାହିଁକି ନୁଆଖାଇ ଦିନ ଘରକୁ ଆସିଥା'ନ୍ତି । ଏହି ଦିନର ବହୁ ଆଗରୁ ଘରର ବୋହୂମାନେ ଗାଧୋଇସାରି ପୂଜାସ୍ଥାନ ଓ ପିଠାପଣା ତିଆରି କରିବା ସ୍ଥାନ ସଫାସୁତୁରା କରି ରଖନ୍ତି । ଏହି ଦିନ ନୂଆ ଲୁଗା ପରିଧାନ କରିବାର ବିଧି ମଧ୍ୟ ରହିଛି । ଏହି ପର୍ବରେ ମଧ୍ୟ ପୂର୍ବଦିନୁ ନୁଆଧାନ ସଂଗ୍ରହ କରାଯାଇଥାଏ ।

ଯେତେବେଳେ ଉପଲବ୍ଧି କରିହୁଏ ଯେତେବେଳେ କି ଭାଇଭାଇ ମଧ୍ୟରେ ଥିବା ମନୋମାଳିନ୍ୟ ସତ୍ତ୍ୱେ ସାନଭାଇ ବଡ଼ଭାଇ ଘରକୁ ଯାଇ ଏକା ଥାଳିରେ ପ୍ରସାଦ ସେବନ କରିଥାଏ । ଇଷ୍ଟଦେବ ବା ଦେବୀଙ୍କ ପୂଜାପରେ ସଭିଏଁ ଦେବଦେବୀଙ୍କୁ ଫୁଲ ଓ ଗୁଡଳ ଅର୍ପଣ କରିସାରିବା ପରେ ଏକାଠି ଖାଇ ବସନ୍ତି । ପ୍ରଥମେ ନୂଆଧାନର ଖୁଡେ ଖିଆଯାଏ । ପ୍ରସାଦ ସେବନ ପରେ ଛୋଟମାନେ ବଡ଼ମାନଙ୍କୁ ମୁଣ୍ଡିଆ ମାରିବା ବିଧି ରହିଛି । ଏହି ବିଧି ଯେ, ପାରମ୍ପରିକ ରୀତିରେ ଚଳିଆସୁଛି, ତାହା ନୁହେଁ ବାସ୍ତବରେ ଏହା ମନୀଷମନର ଏକ ମୁକ୍ତ ଚିନ୍ତନ, ଓଡ଼ିଆ ସଂସ୍କୃତିର ଏକ ଜୀବନ୍ତ ପ୍ରତିଛବି ।

ଏହି ପର୍ବ ପାରିବାରିକ ପରିପ୍ରେକ୍ଷୀରେ ସ୍ନେହ, ଶ୍ରଦ୍ଧା ସ୍ଥାପନ କରିବାରେ, ଲୁପ୍ତ ସୌହାର୍ଦ୍ଦ୍ୟ ଫେରାଇ ଆଣିବାରେ ସହାୟକ ହୋଇଥାଏ । 'ନୂଆଖାଇ ଜୁହାର' ପର୍ବର ଏକ ବିଶେଷ ବିଧି । ଏହି ଦିନରେ ଲୋକେ ପରସ୍ପରକୁ ଜୁହାର କରି 'ଜିଇଁ ଜାଗିଥିଲେ ଭେଟେ' ବୋଲି କହିଥା'ନ୍ତି । ଅର୍ଥାତ୍ ଜୀବନରେ ଥିଲେ, ପୁଣି ଅନ୍ୟ ବର୍ଷକୁ ଭେଟ ହେବ । ଏହି 'ନୂଆଖାଇ ଭେଟ' ଏ ଅଞ୍ଚଳର ସାଂସ୍କୃତିକ ଚେତନାରେ ବଳିଷ୍ଠ । ଏହାର ପୃଷ୍ଠଭୂମି ଭାରତୀୟ ସାଂସ୍କୃତିକ ଚେତନାରେ ପ୍ରଭାବିତ । ତୈତ୍ତିରୀୟ ଉପନିଷଦର ବାଣୀ ହେଲା—

ଅନ୍ନଂନ ନିନ୍ଦାତ୍, ତଦ୍ ବ୍ରତମ ଅନ୍ନଂନ ପରିଚକ୍ଷିତ୍ ।
ତେବ୍ରତମ୍‌ଅନଂ ବହୁ କୁର୍ବ୍ୟତ୍ । ତଦ୍‌ବ୍ରତମ୍ ।

ଅର୍ଥାତ୍ ଅନ୍ନକୁ ନିନ୍ଦା କର ନାହିଁ । ଅନ୍ନ ନଷ୍ଟ କରନାହିଁ । ଅନ୍ନ ବହୁ ପରିମାଣରେ ଉତ୍ପନ୍ନ କର । ଏହା ତୁମର ବ୍ରତ ହେଉ । ଏହି ସାଂସ୍କୃତିକ ଚେତନାରେ ପୁଷ୍ଟ 'ନୂଆଖାଇ ପର୍ବ' ।

ପୁଣି ଏହି ଦିନଟି ଆମକୁ ଭଦ୍ରବାଣୀ ଉଚ୍ଚାରଣ କରିବାକୁ ଅନ୍ୟକୁ ଦ୍ୱେଷ ନକରିବାକୁ, ସମସ୍ତ ମଣିଷ ମଧ୍ୟରେ ସଦ୍‌ଜ୍ଞାନ ଜାତ କରିବାକୁ, ଆମକୁ ଶିକ୍ଷା ଦିଏ । ଏଣୁ ଅଥର୍ବ ବେଦରେ କୁହାଯାଇଛି—

ମା ଭ୍ରାତା ଭ୍ରାତରଂ ଦ୍ୱିକ୍ଷନ୍
ମା ସ୍ୱାସାରମୁତ ସ୍ୱସା

ସମ୍ୟଥଃ ସବ୍ରତା ଭୂତବାଚ
ବଦତ ଭଦ୍ରୟା

ଏଣୁ ନୂଆଖାଇ ପର୍ବ କେବଳ ଏକ ପରମ୍ପରା ନୁହେଁ, ଏହା ପଶ୍ଚିମ ଓଡ଼ିଶାର ସଂସ୍କୃତି ଓ ଜୀବନ ଦର୍ଶନର ଆଲେଖ୍ୟ ।

ପାଟଣାଗଡ଼,
ବଲାଙ୍ଗୀର—୭୬୭୦୨୫ ।



ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କ ୭୫ତମ ଜନ୍ମଜୟନ୍ତୀ ପାଳନ ଅବସରରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ତାଙ୍କ ଫଟୋ ଚିତ୍ରରେ ମାଲ୍ୟାର୍ପଣ କରୁଛନ୍ତି ।

# ଖଦି ଗ୍ରାମୋଦ୍ୟୋଗ : ଗ୍ରାମାଞ୍ଚଳର ଏକ ବାସ୍ତବବାଦୀ ସାଧନ

* ଶ୍ରୀ ରାଜକିଶୋର ନାୟକ

ଉନବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଗାନ୍ଧୀଜୀ ଦେଶର ଦରିଦ୍ର ଲୋକମାନଙ୍କର ସର୍ବନିମ୍ନ ଅର୍ଥନୈତିକ ଆବଶ୍ୟକତା ପୂରଣ କରାଯିବାର ଅପରିହାର୍ଯ୍ୟତା ସମ୍ପର୍କରେ ପ୍ରସଙ୍ଗ ଉତ୍‌ଥାପନ କରି ଖଦି ଓ ଗ୍ରାମୋଦ୍ୟୋଗର ପ୍ରସାର ପାଇଁ ଆହ୍ୱାନ ଦେଇଥିଲେ । ଦୁଇଶହ ବର୍ଷର ପରାଧୀନତା ଓ ନିରବଚ୍ଛିନ୍ନ ନିପୀଡ଼ନ ଫଳରେ ଅର୍ଥନୈତିକ ପକ୍ଷାଘାତଗ୍ରସ୍ତ ହୋଇପଡ଼ିଥିବା ଭାରତବର୍ଷର ଗ୍ରାମଜୀବନକୁ ସୁସ୍ଥ ସତେଜ ଓ ନିରାମୟ କରିବାର ଏକମାତ୍ର ସାଧନ ଭାବରେ ସେ ଖଦି ଓ ଗ୍ରାମୋଦ୍ୟୋଗର ପରିକଳ୍ପନା କରିଥିଲେ ।

ଆଜି, ସତୁରି ବର୍ଷପରେ ଆଧୁନିକ ଭାରତରେ ଖଦି ଗ୍ରାମୋଦ୍ୟୋଗର ଉପଯୋଗିତା ବିଷୟ ଆଲୋଚନା କଲାବେଳେ ଏ କଥା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଗ୍ରାମାଞ୍ଚଳର ଲୋକମାନଙ୍କୁ ଖାଇବା ପାଇଁ ଓ ପିନ୍ଧିବା ପାଇଁ ଦେବା ନିମନ୍ତେ ଅନ୍ନବସ୍ତ୍ର ସମସ୍ୟାର ସମାଧାନ କେବଳ ନୁହେଁ ସେମାନଙ୍କ ନିମନ୍ତେ ଏକ ସୁସ୍ଥ ସୁନ୍ଦର ସ୍ୱାବଲମ୍ବୀ ସାମାଜିକ ଜୀବନର ପ୍ରତ୍ୟୟପୂର୍ଣ୍ଣ ପ୍ରତିଶ୍ରୁତି ରହିଛି ଖଦି ଓ ଗ୍ରାମୋଦ୍ୟୋଗ ମଧ୍ୟରେ ।

ସେସବୁ ସମ୍ଭାବନାର ବାସ୍ତବବାଦୀତା ଓ ତାହାର ଫଳପ୍ରଦ ରୂପାୟନ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଖଦି ଗ୍ରାମୋଦ୍ୟୋଗ ପରିକଳ୍ପନାର ପ୍ରେକ୍ଷାପଟ, ମୂଳ ଏହାର ଆଭିମୁଖ୍ୟ ଓ କାର୍ଯ୍ୟକ୍ରମ ସମ୍ପର୍କରେ ସଂକ୍ଷେପରେ ସୂଚନା ଦେବା ଆବଶ୍ୟକ ।

ପ୍ରଥମେ ଖଦି ଓ ଗ୍ରାମୋଦ୍ୟୋଗର ପରିକଳ୍ପନା ଥିଲା ବିଦେଶୀ ଶାସକଙ୍କ ବିରୋଧରେ ସ୍ୱଦେଶୀ ସ୍ୱାବଲମ୍ବନଶୀଳତା ପାଇଁ ଗାନ୍ଧୀଜୀଙ୍କର ଏକ ଅର୍ଥନୈତିକ ଆନ୍ଦୋଳନ । ସେତେବେଳେ ଏହା ସମଗ୍ର ଭାରତବର୍ଷରେ ଏକ ନବଜାଗରଣର ସୂତ୍ରପାତ କରିଥିଲା । ସ୍ୱାଧୀନତା ହାସଲପରେ ଏହାର ଗୁରୁତ୍ୱ ହ୍ରାସ ପାଇବା ବଦଳରେ ଅଧିକ ବୃଦ୍ଧି ପାଇଲା । ସ୍ୱାଧୀନ ଭାରତରେ ଗ୍ରାମାଞ୍ଚଳର କୋଟି କୋଟି ଦରିଦ୍ର ଅଧିବାସୀମାନଙ୍କର ଅର୍ଥନୈତିକ ବିକାଶ ସାଧନ ପାଇଁ ଖଦି ଓ ଗ୍ରାମୋଦ୍ୟୋଗର ପ୍ରସାର ଉପରେ ତତ୍କାଳୀନ ରାଷ୍ଟ୍ରନୀତିଜ୍ଞମାନେ ଗୁରୁତ୍ୱ ଆରୋପ କରିଥିଲେ । କାରଣ ଭାରତୀୟ ଜନସଂଖ୍ୟାର ପ୍ରାୟ ଶତକଡ଼ା ୮୦ ଭାଗ ଲୋକ କୃଷି ଶ୍ରମିକ ଓ କୌଳିକ କାରିଗର ଏବଂ ସେମାନଙ୍କୁ ବର୍ଷ ମଧ୍ୟରେ ମାତ୍ର ଛ ମାସ କୃଷିକାର୍ଯ୍ୟରେ ନିୟୋଜିତ ରହି ଅବଶିଷ୍ଟ ଛ ମାସ ବେକାର ରହୁଥିବା ଦୃଷ୍ଟିରୁ ଏହି ସମସ୍ୟାର ସମାଧାନ ପାଇଁ ସେମାନଙ୍କୁ ବର୍ଷସାରା କାମ ଯୋଗାଇ ଦେବା ନିମନ୍ତେ ଯୋଜନା ପ୍ରଣୟନକାରୀ ରାଷ୍ଟ୍ରନୀତିଜ୍ଞମାନଙ୍କ ଦୃଷ୍ଟିରେ ଏକମାତ୍ର ଫଳପ୍ରଦ ସାଧନ ଥିଲା ଖଦି ଓ ଗ୍ରାମୋଦ୍ୟୋଗ । ଏଥିପାଇଁ ୧୯୫୭ ମସିହାରେ ପାର୍ଲିଆମେଣ୍ଟରେ ଗୃହିତ ପ୍ରସ୍ତାବ ଅନୁଯାୟୀ ଜାତୀୟସ୍ତରରେ ଖଦି ଓ ଗ୍ରାମୋଦ୍ୟୋଗ କମିଶନ ଗଠନ କରାଗଲା । ପୂର୍ବରୁ ଥିବା ସର୍ବଭାରତୀୟ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡଠାରୁ ଏହା ସେହିବର୍ଷ କାର୍ଯ୍ୟଭାର ଗ୍ରହଣ କଲା । ଖଦି ଓ ଗ୍ରାମୋଦ୍ୟୋଗର ପ୍ରତିଷ୍ଠା ଓ ପ୍ରସାର ପାଇଁ ଯୋଜନା ପ୍ରସ୍ତୁତ କରିବା, ସାଙ୍ଗଠନିକ ବ୍ୟବସ୍ଥା ଗ୍ରହଣ କରିବା ଓ କାର୍ଯ୍ୟକ୍ରମ ରୂପାୟନ ନିମନ୍ତେ ବିହିତ ପଦକ୍ଷେପ ନେବା ଏଥି ନିମି ଗ୍ରାମ୍ୟଶିଳ୍ପରେ ପ୍ରଦୋଷଣ ବ୍ୟବସ୍ଥା କରିବା, ଖଦି ଗ୍ରାମୋଦ୍ୟୋଗ ଜାତ ସାମଗ୍ରୀର ବିପଣନ ପାଇଁ ବ୍ୟବସ୍ଥା କରିବା, ଉନ୍ନତ ଧରଣର ଯନ୍ତ୍ରପାତି ସାଜସରଞ୍ଜାମ ଓ ପ୍ରଯୁକ୍ତିବିଦ୍ୟା ପ୍ରବର୍ତ୍ତନ କରିବା, ଉତ୍ପାଦନ ହାର ବୃଦ୍ଧି ନିମନ୍ତେ ପରାମର୍ଶ ଦେବା ଏବଂ ବିଭିନ୍ନ ଖଦି ଓ ଗ୍ରାମ୍ୟଶିଳ୍ପ ସଂସ୍ଥା ମଧ୍ୟରେ ପାରସ୍ପରିକ ସହଯୋଗ ରକ୍ଷାକରିବା ଇତ୍ୟାଦି ଖଦି ଗ୍ରାମୋଦ୍ୟୋଗ କମିଶନଙ୍କର ମୁଖ୍ୟ କାର୍ଯ୍ୟ । ସେହିପରି ରାଜ୍ୟ ସ୍ତରରେ ଏହି କାର୍ଯ୍ୟ ସମ୍ପାଦନ କରିବାରେ ଦାୟିତ୍ୱ ରାଜ୍ୟ ବୋର୍ଡ ଉପରେ ନ୍ୟସ୍ତ କରାଗଲା ।

ଏବେ ପ୍ରଶ୍ନ ହେଉଛି ବିଂଶଶତାବ୍ଦୀର ପଞ୍ଚମ ଦଶକରୁ ଆମ ଦେଶରେ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ ହେଉଥିବା ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ଆଶାନୁରୂପ ଭାବରେ ସଫଳତା ହାସଲ କରିପାରିଛି କି ? ସର୍ବେକ୍ଷଣରୁ ଜଣାଯାଏ, କେତେକ ରାଜ୍ୟରେ ଏହି କାର୍ଯ୍ୟକ୍ରମ ଅଧିକତର ଫଳପ୍ରଦ ଭାବରେ କାର୍ଯ୍ୟକାରୀ ହୋଇଥିବା ଓ ଲୋକପ୍ରିୟତା ହାସଲ କରିଥିବା ସ୍ଥଳେ, ଅନ୍ୟ କେତେକ ରାଜ୍ୟରେ ଏହା ଆଶାନୁରୂପ ଭାବରେ ଲକ୍ଷ୍ୟ ହାସଲ କରିପାରିନାହିଁ । ଆଶାନୁରୂପ ଭାବରେ ସଫଳତା ହାସଲ କରିପାରିନଥିବା ରାଜ୍ୟଗୁଡ଼ିକରେ କ୍ଷେତ୍ରସଙ୍ଗଠନଗତ ତ୍ରୁଟି, ସରକାରୀ ପ୍ରୋତ୍ସାହନ ଓ ତତ୍ପରତା, ପର୍ଯ୍ୟବେକ୍ଷଣ ବ୍ୟବସ୍ଥା ଇତ୍ୟାଦିରେ କେତେକ ଦୁର୍ବଳତା ରହିଥିବା ବିଶେଷତଃ ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମକୁ ଲୋକପ୍ରି

ଯୋଗାଇବା ଦିଗରେ ଆନୁଷଙ୍ଗିକ ପ୍ରଶ୍ନରେ ଅଭାବ ରହିଯାଇଥିବା ଦୃଷ୍ଟିକୁ ଆସେ । ଏସବୁ ଦିଗପ୍ରତି ଆବଶ୍ୟକ ଧ୍ୟାନ ଦିଆଗଲେ ଭାରତବର୍ଷର ପ୍ରତ୍ୟେକ ରାଜ୍ୟରେ ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ଯେ ଅତ୍ୟନ୍ତ ଲୋକପ୍ରିୟ ଭାବରେ କାର୍ଯ୍ୟକାରୀ କରାଯାଇ ପାରିବ ଓ ଦେଶର ଗ୍ରାମାଞ୍ଚଳ ବେକାର ସମସ୍ୟାର ଏହା ଏକମାତ୍ର ବାସ୍ତବବାଦୀ ସମାଧାନ ଭାବରେ କାର୍ଯ୍ୟକରିବ ଏଥିରେ କୌଣସି ସନ୍ଦେହ ନାହିଁ । ବୋର୍ଡ଼ ପକ୍ଷରୁ କର୍ମଶାଳା, ଗୋଦାମଘର, ଯନ୍ତ୍ରପାତି, କାର୍ଯ୍ୟକାରୀ ମୂଳଧନ, ଅଂଶଧନ ଓ ପରିଚାଳନା ବ୍ୟୟ ବାବଦରେ ଆର୍ଥିକ ସହାୟତା ଯୋଗାଇ ଦିଆଯାଏ, ହିତାଧିକାରୀମାନଙ୍କୁ ତାଲିମ ଦିଆଯାଏ ଓ ସେମାନଙ୍କ ଦ୍ୱାରା ଉତ୍ପାଦିତ ସାମଗ୍ରୀର ବିପଣନ ପାଇଁ ପ୍ରୋତ୍ସାହନ ଦିଆଯାଏ । ଖଦି ବୋର୍ଡ଼ ମାଧ୍ୟମରେ ଯୋଗାଇ ଦିଆଯାଇଥିବା ସହାୟତା ବାବଦ ଋଣ ଉପରେ ବାର୍ଷିକ ମାତ୍ର ଶତକଡ଼ା ୪ ଭାଗ ସୁଧ ପଡ଼େ ଓ ଖଦି ପାଇଁ ଋଣ ଉପରେ ଆଦୌ ସୁଧ ପଡ଼େନାହିଁ । ପୁଣି କେତେକ ଶିଳ୍ପରେ ଗ୍ରାଣ୍ଟ ବା ଅନୁଦାନ ଦିଆଯିବାର ସୁବିଧା ମଧ୍ୟ ରହିଛି । ଏହି ସୁବିଧା ଅନ୍ୟ କୌଣସି ଅର୍ଥ ଲଗାଣକାରୀ ସଂସ୍ଥାରୁ ମିଳେ ନାହିଁ ।

ଏତେ ସବୁ ସୁବିଧା ସୁଯୋଗ ଓ ଲାଭକାରୀ ଆତ୍ମନିଯୋଜନର ନିର୍ଭରଯୋଗ୍ୟ ପ୍ରତିଶ୍ରୁତି ଥିବା ସତ୍ତ୍ୱେ ଆମ ରାଜ୍ୟରେ ଖଦି ଓ ଗ୍ରାମୋଦ୍ୟୋଗ ଆଶାଜନକ ଭାବରେ ଲୋକପ୍ରିୟ ହୋଇ ପାରିନାହିଁ କାହିଁକି ? ଏ ଦିଗରେ ବିଶେଷ ଅନୁଧ୍ୟାନ କରାଯାଉଛି ଓ ବିହିତ ପଦକ୍ଷେପ ନେବାପାଇଁ ତ୍ୱରାନ୍ୱିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି ।

ଫଳପ୍ରଦ ଲୋକସମ୍ପର୍କ ଓ ପ୍ରଚାର କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ଲୋକମାନଙ୍କ ପାଇଁ ଥିବା ସୁବିଧା ସୁଯୋଗ ଓ ସେମାନଙ୍କର ଅଧିକାର ସମ୍ପର୍କରେ ସେମାନଙ୍କୁ ଜଣାଇ ଦିଆଯିବା ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଜିଲ୍ଲାପାଳଙ୍କଠାରୁ ଆରମ୍ଭକରି ପଞ୍ଚାୟତ ସମିତି ଅଧ୍ୟକ୍ଷ, ଗୋଷ୍ଠୀ ଉନ୍ନୟନ ଅଧିକାରୀ, ସରପଞ୍ଚ, ପଞ୍ଚାୟତ ସମିତି ସଦସ୍ୟମାନଙ୍କୁ ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମରେ ସକ୍ରିୟ ଭାବରେ ଅଂଶଗ୍ରହଣ କରାଇବା ପାଇଁ ବ୍ୟବସ୍ଥା କରାଯାଉଛି । ପୂର୍ବରୁ ବ୍ଲକ ଓ ଜିଲ୍ଲାସ୍ତରର ଖଦି ଗ୍ରାମୋଦ୍ୟୋଗ ଯୋଜନାରେ ଦିଆଯାଉଥିବା ସହାୟତା ଓ ହାସଲ କରାଯାଉଥିବା ପ୍ରଗତି ଜିଲ୍ଲା ଉନ୍ନୟନ କମିଟି ବୈଠକରେ ପଡୁନାହିଁ । ଏହା ଯେପରି ଜିଲ୍ଲା ଉନ୍ନୟନ କମିଟି ଓ ତ୍ରିସ୍ତରୀୟ ପ୍ରଗତି ସମୀକ୍ଷା କମିଟିରେ ପଡ଼ିବ ଓ ପ୍ରଶାସନିକ ଆଶ୍ରୟ ଓ ତତ୍ପରତା ଲାଭକରିବ ସେଥିପାଇଁ ବ୍ୟବସ୍ଥା କରାଯାଉଛି ।

ସରକାରୀ ସ୍ତରରେ ଆବଶ୍ୟକ ପ୍ରୋତ୍ସାହନ ମିଳିବା ନିମନ୍ତେ ବିଭିନ୍ନ ସରକାରୀ ବିଭାଗ ଓ ଉଚ୍ଚ କର୍ତ୍ତୃପକ୍ଷଙ୍କ ସହ ଆଲୋଚନା କରାଯାଉଛି । ନିକଟରେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଗୁରୁତି ଉଚ୍ଚସ୍ତରୀୟ କମିଟିରେ ଏହି ପ୍ରସଙ୍ଗ ଉତ୍ଥାପିତ ହୋଇଥିଲା ଓ ଗ୍ରାମାଞ୍ଚଳରେ ପଲିବସ୍ତ୍ର ଯୋଜନା ମାଧ୍ୟମରେ ମହିଳାମାନଙ୍କ ପାଇଁ କର୍ମ ସଂସ୍ଥାନର ବ୍ୟବସ୍ଥା କାର୍ଯ୍ୟକ୍ରମକୁ ଅଧିକ ସକ୍ରିୟ ଭାବରେ ରୂପାୟନ କରିବାକୁ ସିଦ୍ଧାନ୍ତ ନିଆଯାଇଛି । ଅନ୍ୟ ଗ୍ରାମ୍ୟଶିଳ୍ପ ଓ ଖଦି କ୍ଷେତ୍ରରେ ଅନୁରୂପ ସରକାରୀ ପ୍ରୋତ୍ସାହନ ମିଳିବା ଦିଗରେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି ।

କ୍ଷେତ୍ର ପର୍ଯ୍ୟବେକ୍ଷଣ ଓ ପ୍ରଶାସନ କାର୍ଯ୍ୟକୁ ଅଧିକ କ୍ରିୟାଶୀଳ କରାଯିବା ଦିଗରେ ବିସ୍ତୃତ ବିମର୍ଶ କରାଯାଉଛି । ଗ୍ରାମାଞ୍ଚଳରେ ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ପର୍ଯ୍ୟବେକ୍ଷଣ ଓ ପ୍ରଶାସନ ଦାୟିତ୍ୱରେ ଥିବା କର୍ମଚାରୀମାନେ ନିଷ୍ଠାପର ଭାବରେ କାର୍ଯ୍ୟ ନକଲେ ସବୁ ଯୋଜନା ଓ ବିସ୍ତୃତ ଆଲୋଚନା ନିଷ୍ଫଳ ହୋଇଯିବା ସ୍ୱାଭାବିକ । ଏସବୁ ଦାୟିତ୍ୱରେ ଥିବା କର୍ମଚାରୀମାନଙ୍କର ନିଷ୍ଠା ଓ ସାଧୁତା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କୌଣସି ପ୍ରକାର ଅବହେଳା, ଅସାଧୁତା ଓ ଦୁର୍ନୀତି ବିରୋଧରେ ଦୃଢ଼ ପ୍ରଶାସନିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ।

ଖଦି ଗ୍ରାମୋଦ୍ୟୋଗ ସାମଗ୍ରୀର ବିପଣନ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ । ଏହା ସ୍ୱୀକାର୍ଯ୍ୟ ଯେ, ଆମ ରାଜ୍ୟରେ ଏସବୁର ବିପଣନ ବ୍ୟବସ୍ଥା ଆଦୌ ଆଶାନୁରୂପ ନୁହେଁ । ସମ୍ବଲପୁର ବା ନୂଆପାଟଣାର ପାଟଶାଢ଼ୀ ଓଡ଼ିଶାରେ ୧୨ ଶହ ୧୩ ଶହ ଟଙ୍କାରେ ବିକ୍ରି କରାଯାଉଥିବା ବେଳେ ସେସବୁ ଶାଢ଼ୀକୁ ବମ୍ବେର ବେପାରୀ ବମ୍ବେରେ ୪ ହଜାର ଟଙ୍କାରେ ସ୍ୱଚ୍ଛନ୍ଦରେ ବିକ୍ରି କରୁଥିବା ବିଷୟ ଉଲ୍ଲେଖନୀୟ । ଦିଲ୍ଲୀ, ବମ୍ବେ, କଲିକତା ମାଡ୍ରାସ ଆଦି ନଗର ଗୁଡ଼ିକରେ ଖଦି ଓ ପଲିବସ୍ତ୍ରର ତିଆରି ଆଧୁନିକ ଫେଶନ ପୋଷାକ ପରିଚ୍ଛଦ ପ୍ରତି ସାଧାରଣ କ୍ରେତାମାନଙ୍କ ଆଗ୍ରହ ଆଶାତୀତ ଭାବରେ ବୃଦ୍ଧି ପାଇଛି । କ୍ରେତା ଓ ବଜାର ଚାହିଦାକୁ ଦୃଷ୍ଟିରେ ରଖି ସାମଗ୍ରୀ ଉତ୍ପାଦନ ବିପଣନ କଳାର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ । ଆମ ରାଜ୍ୟରେ ସେଥିପ୍ରତି ଉପଯୁକ୍ତ ଧ୍ୟାନ ଦିଆଯାଉନାହିଁ । ଓଡ଼ିଶାର ପ୍ରତି ଜିଲ୍ଲାରେ ଥିବା ଖଦି ଗ୍ରାମୋଦ୍ୟୋଗ ବିପଣନ ସମିତି ଖଦି ଗ୍ରାମୋଦ୍ୟୋଗ ସାମଗ୍ରୀ ବିକ୍ରୟ ଦିଗରେ ଆଶାନୁରୂପ ଭୂମିକା ଗ୍ରହଣ କରିପାରୁନାହିଁ । ସେଗୁଡ଼ିକର କାର୍ଯ୍ୟଧାରା ଓ ଆଭିମୁଖ୍ୟରେ ଆବଶ୍ୟକ ସଂସ୍କାର ଆଣିବା ପାଇଁ ପଦକ୍ଷେପ ନିଆଯାଉଛି । ରାଜ୍ୟସ୍ତରରେ ଥିବା ଗ୍ରାମୋଦ୍ୟୋଗ ବିକ୍ରୟ ଭଣ୍ଡାରକୁ ଏକ ଗୁରୁତ୍ୱପୂର୍ଣ୍ଣ ବିପଣନ ମାଧ୍ୟମରେ ପରିଣତ କରାଇବା ପାଇଁ ତ୍ୱରାନ୍ୱିତ ପଦକ୍ଷେପ ନିଆଯାଉଛି । ଏହାଛଡ଼ା ଓଡ଼ିଶାରେ ଗୋଟିଏ ଖଦି ଗ୍ରାମୋଦ୍ୟୋଗ ଭବନ ନିର୍ମାଣ କରିବାର ପ୍ରସ୍ତାବ ରହିଛି । ଏହିସବୁ କାର୍ଯ୍ୟକ୍ରମ ଓ ପ୍ରସ୍ତାବର ତ୍ୱରାନ୍ୱିତ ରୂପାୟନ ପାଇଁ ପଦକ୍ଷେପ ନିଆଯାଉଛି । ନିକଟ ଭବିଷ୍ୟତରେ ଖଦି ଗ୍ରାମୋଦ୍ୟୋଗ ସାମଗ୍ରୀର ବିପଣନ କ୍ଷେତ୍ର ଉଲ୍ଲେଖନୀୟ ସଫଳତା ନିଶ୍ଚୟ ହାସଲ କରାଯିବ ।

ଖଦି ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଥିବା ନୂତନ ଶିଳ୍ପଗୁଡ଼ିକ ବିଷୟରେ ପୂର୍ବରୁ ଉଲ୍ଲେଖ କରାଯାଇଛି । ସେସବୁ ଶିଳ୍ପରେ ଉଦ୍ୟୋଗୀ ବେକାରମାନଙ୍କ ପାଇଁ ଆତ୍ମନିଯୋଜନର ପର୍ଯ୍ୟାପ୍ତ ସୁଯୋଗ ରହିଛି । ଉଦାହରଣ ସ୍ୱରୂପ

ଜଣେ ଯୋଗ୍ୟତା ସମ୍ପନ୍ନ ଶିକ୍ଷିତ ବେକାରୀଙ୍କୁ ଲଫାପା ତିଆରି ଶିଳ୍ପରେ ୯୦ ହଜାର ଟଙ୍କା ଆର୍ଥିକ ସହାୟତା ଦିଆଯାଇପାରିବ । ଏଥିରୁ ସେ ବର୍ଷରେ ୩ ଶହ ଦିନ କାମକରି, ୪ ଜଣ ଲୋକଙ୍କୁ ନିଯୁକ୍ତି ପ୍ରଦାନ କରିପାରିବେ ଓ ବାର୍ଷିକ ଅତିକମରେ ୩ ଲକ୍ଷ ୬୦ ହଜାର ଟଙ୍କାର କାରବାର କରିପାରିବେ । ସେହିଭଳି ଅଫିସ ପାଇଁ ଦରକାର ହେଉଥିବା ଅଠାଟିଆରି ଶିଳ୍ପରେ ୨ ଲକ୍ଷ ୭୦ ହଜାର ଟଙ୍କା ଯୋଗାଇ ଦେବାର ବ୍ୟବସ୍ଥା ରହିଛି । ଏଥିରୁ ହିତାଧିକାରୀ ବ୍ୟକ୍ତିବିଶେଷ ବର୍ଷରେ ୩ ଶହ ଦିନ କାମକରି ୬ ଜଣ ଲୋକଙ୍କୁ ନିଯୁକ୍ତି ଦେଇ ବାର୍ଷିକ ହାରାହାରି ୩ ଲକ୍ଷ ଟଙ୍କାର କାରବାର କରିପାରିବେ । ଏଥିରୁ ଗ୍ରାମ୍ୟଶିଳ୍ପ ମାଧ୍ୟମରେ ବେକାର ଯୁବକମାନଙ୍କ ପାଇଁ କର୍ମସଂସ୍ଥାନର ସୁଯୋଗ ବିଷୟ ସହଜରେ ଅନୁମାନ କରିହୁଏ । ଜାପାନରେ ଅର୍ଥ ନୈତିକ ଅଭ୍ୟୁଦୟ ପାଇଁ କୁଟୀର ଶିଳ୍ପର ଭୂମିକା ବିଷୟ ଉଲ୍ଲେଖ କରିବା ନିଷ୍ପ୍ରୟୋଜନ । ବର୍ତ୍ତମାନ କେବଳ ଏହାର ଫଳପ୍ରଦ କାର୍ଯ୍ୟକାରିତା ଉପରେ ଅଧିକ ଧ୍ୟାନ ଦିଆଯିବା ଦରକାର, ଓ ଏ ଦିଗରେ ଓଡ଼ିଶା ବୋର୍ଡ଼ ପକ୍ଷରୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ଓଡ଼ିଶାରେ ଗ୍ରାମ୍ୟ ଶିଳ୍ପାଞ୍ଚଳ ପ୍ରତିଷ୍ଠା, ଧନମୂଳକ ଶିକ୍ଷାର ପ୍ରବର୍ତ୍ତନ ଓ ବ୍ଲକ ସ୍ତରରେ ଅଧିକ ସଂଖ୍ୟକ ମହିଳାଙ୍କ ଆତ୍ମନିୟୋଜନ ପାଇଁ ସ୍ୱତନ୍ତ୍ର ମହିଳା ସମବାୟ ସମିତି ଗଠନ ପାଇଁ ପଦକ୍ଷେପ ଗ୍ରହଣ କରାଯାଉଛି ।

ଗ୍ରାମାଞ୍ଚଳର ଦରିଦ୍ର ଲୋକମାନଙ୍କର ଆର୍ଥିକ ଓ ସାମାଜିକ ବିକାଶ ପାଇଁ ଖଦି ଗ୍ରାମୋଦ୍ୟୋଗ ଏକମାତ୍ର ବାସ୍ତବବାଦୀ କାର୍ଯ୍ୟକ୍ରମ । ଏହାକୁ ଫଳପ୍ରଦ ଭାବରେ କାର୍ଯ୍ୟକାରୀ କରି ଓଡ଼ିଶାକୁ ଏକ ଆଦର୍ଶ ରାଜ୍ୟ ଭାବରେ ଗଢ଼ି ତୋଳିବା ସଙ୍କଳ୍ପରେ ରାଜ୍ୟ ବୋର୍ଡ଼ ସରକାର ଓ ସାଧାରଣଙ୍କର ସହଯୋଗ ଲାଭକରି ଅଚିରେ ଧାର୍ଯ୍ୟଲକ୍ଷ୍ୟ ହାସଲ କରିପାରିବ ।

---

ଅଧ୍ୟକ୍ଷ,
ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ।



ରବୀନ୍ଦ୍ର ମଣ୍ଡପଠାରେ ସ୍ରୁଜନୀର ସପ୍ତମ ବାର୍ଷିକ ପ୍ରତିଷ୍ଠା ଦିବସ ଉତ୍ସବକୁ ମତ୍ସ୍ୟ ଓ ପଶୁ ସମ୍ପଦ ବିଭାଗ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ଉଦ୍‌ଘାଟନ କରୁଛନ୍ତି (୨/୮) ।



ସୂଚନା ଭବନଠାରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପୋଲିସ୍ ପଦାଧିକାରୀମାନଙ୍କୁ ରାଷ୍ଟ୍ରପତିଙ୍କ ପଦକ ପ୍ରଦାନ କରୁଛନ୍ତି ।



ସ୍ୱାଧୀନତା ଦିବସ ପାଳନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମର ପୂର୍ବତନ ଗାଡ଼ିଚାଳକ ସ୍ୱର୍ଗତ ଗୁଲବଦନ ଟାଲିଙ୍କ ବିଧବା ପତ୍ନୀ ଡାଲିଚ ଟାଲିଙ୍କୁ ଜୀବନରକ୍ଷା ପଦକ ପ୍ରଦାନ କରୁଛନ୍ତି ।




ଜଗତପୁରଠାରେ ଜଳ କ୍ରୀଡ଼ା କମ୍ପ୍ଲେକ୍ସକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ସଚିବାଳୟଠାରେ ସ୍ୱେଚ୍ଛାସେବୀ ଅନୁଷ୍ଠାନର ୯ମ ରାଜ୍ୟସ୍ତରୀୟ ସମନ୍ୱୟ ପରିଷଦ ବୈଠକରେ ମୁଖ୍ୟ ଶାସନ ସଚିବ ଶ୍ରୀ ରବିନାରାୟଣ ଦାସଙ୍କ ଅଭିଭାଷଣ ।



ଭାରତୀୟ ଅକ୍ସିଜେନ୍‌ର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ପ୍ରସାଦ ମୁଖ୍ୟମନ୍ତ୍ରୀଙ୍କୁ ସଚିବାଳୟ ପ୍ରକୋଷ୍ଠରେ ଭେଟି ଆଲୋଚନା କରୁଛନ୍ତି ।




ଭୁବନେଶ୍ୱରଠାରେ ଭାରତୀୟ ବାଣିଜ୍ୟ ଏବଂ ଶିଳ୍ପ ଓ ଉତ୍କଳ ବାଣିଜ୍ୟ ଓ ଶିଳ୍ପ ଗୃହ ଦ୍ୱାରା ଆୟୋଜିତ ରାଜ୍ୟସ୍ତରୀୟ ସମ୍ମିଳନୀକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।



ସୂଚନା ଭବନଠାରେ ଅନୁଷ୍ଠିତ ମହିଳା ଦକ୍ଷତା ସମିତିର ଏକ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।



ସ୍ୱାୟତ୍ତ ଶାସନ ଦିବସ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଚମ୍ପୁଲଗଡ଼ ଓ ପାଣ୍ଡରା ମଧ୍ୟରେ ଝିମ୍ପିରିଆ ସେତୁ ଉଦ୍‌ଘାଟନ କରୁଛନ୍ତି ।

# ସ୍ୱୟମ୍ଭୁ ବିଶ୍ୱକର୍ମଣ

* ଶ୍ରୀ କୁଳମଣି ଓଝା

ଦେବତା ମନ୍ଦିର ଓ ଅଟ୍ଟାଳିକା ଆଦି ନିର୍ମାଣ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଜ୍ଞାନର ଉପଯୋଗ କରି ଆସୁଛନ୍ତି । ସମଗ୍ର ପୃଥିବୀ ପୃଷ୍ଠରେ ସେହି ସ୍ରଷ୍ଟା ପୁରୁଷ ବିଶ୍ୱକର୍ମାଙ୍କ କଣିକାଏ ଅଶିଷରୁ ସମ୍ପ୍ରତି ବିଜ୍ଞାନରେ ଅଶେଷ ଅଗ୍ରଗତି ଓ ସମ୍ଭାବନା ସୃଷ୍ଟି ହୋଇ ପାରିଛି । ଫଳରେ ମଣିଷ ଦୈବ୍ୟ ଶକ୍ତିକୁ ଜୟ କରି 'ପରା ଶକ୍ତି' ଓ 'ଅପରା ଶକ୍ତି'କୁ ଆୟତ୍ତ କରିବାକୁ ଯାଉଛି ।

ସେଇ ବିଶ୍ୱକର୍ମା ପୁଣି ହେଉଛନ୍ତି ସଚରାଚର ବ୍ୟାପ୍ତ । ସବୁଠି ତାଙ୍କର ସ୍ଥିତି । ସେ ଆକାର, ସେ ପୁଣି ନିରାକାର; ସେ ଗୋଚର, ପୁଣି କେତେବେଳେ ଅଗୋଚର; ସେ ହିଁ ସ୍ରଷ୍ଟା, ସେ ହିଁ ମନ୍ତ୍ର ଦ୍ରଷ୍ଟା । ବିଶ୍ୱକର୍ମା ହେଉଛନ୍ତି ଜଗତର ନେତ୍ର, ଜଗତର ଗୁରୁ; ଜଗତର ନାଥ ଜଗନ୍ନାଥ ସେ । ପୁଣି ଜଗତ୍‌ମୟ ବିଶ୍ୱକର୍ମା । ବହୁ ବିଚିତ୍ର ସମାବେଶ ତାଙ୍କଠିଠାରେ ହିଁ ଦେଖିବାକୁ ମିଳିଥାଏ । "ବିଶ୍ୱକର୍ମା ଜଗତ୍‌ନେତ୍ର" ବିଶ୍ୱକର୍ମା ଜଗଦ୍‌ଗୁରୁଃ ବିଶ୍ୱକର୍ମା ଜଗନ୍ନାଥଃ ବିଶ୍ୱକର୍ମାମିଦଂ ଜଗତ୍ ।"

ସେହି ଆଦି ସ୍ରଷ୍ଟାଙ୍କୁ କଳନା କରିବା ସକାଶେ କୋଟି କୋଟି ଜନ୍ମ ନେବାକୁ ପଡ଼ିବ । ତାଙ୍କର କମନୀୟ ସୌମ୍ୟଶ୍ରୀ ନିକଟରେ ଏ ବିଶ୍ୱର ସମସ୍ତ ବିଭବ ଯେ କେତେ ନ୍ୟୂନ, ତାହା କେବଳ ଆଧ୍ୟାତ୍ମ ଉପଲବ୍ଧି ଦ୍ୱାରା ଅନୁଭବ କରି ହେବ । ତାଙ୍କ ନିକଟରେ ପରାପର ଭେଦ ନାହିଁ । ସୃଷ୍ଟିର ସକଳ ଜୀବ, ସକଳ ବସ୍ତୁକୁ ସେ ଅଭୟ ପ୍ରଦାନ କରିଛନ୍ତି । ସମସ୍ତଙ୍କୁ ସମ ଦୃଷ୍ଟିରେ ଅପାର ଆଶିଷ ବିତରଣ କରିଛନ୍ତି ଏବଂ ଜ୍ଞାନ-ବିଜ୍ଞାନକୁ ନବ ନବ ଉନ୍ମେଷ ଶାଳିନୀ ପ୍ରଜ୍ଞାରେ ମଣ୍ଡମଣ୍ଡ କରି ଦେଇଛନ୍ତି ।

ସବୁ ଯୁଗରେ ସୃଷ୍ଟି ପ୍ରବକ୍ତା ବିଶ୍ୱାତ୍ମା ବିଶ୍ୱକର୍ମା ଗୋଟିଏ ନାମରେ ପୂଜା ପାଇ ଆସିଛନ୍ତି । ଲୌହ, କାଷ୍ଠ, ପ୍ରସ୍ତର, ଦାତ୍ର-କାଂସ୍ୟ ଓ ସ୍ୱର୍ଣ୍ଣାଦି ପଞ୍ଚ ଶିଳ୍ପ କଳାକୁ ପଞ୍ଚତତ୍ତ୍ୱରେ ସୁପରିଶ୍ଳେଷଣ କରି ଆସିଛନ୍ତି ସ୍ୱୟମ୍ଭୁ ବିଶ୍ୱକର୍ମା । ତାଙ୍କର ପଞ୍ଚପୁତ୍ର ମନୁ, ମୟ, ତ୍ୱଷ୍ଟା, ଶିଳ୍ପୀ ଓ ଦୈବଜ୍ଞ ଏହି ପଞ୍ଚ ଶିଳ୍ପକୁ ଧାରଣ କରିଛନ୍ତି ଏବଂ ବିଶ୍ୱ ବକ୍ଷରେ ପଞ୍ଚଶିଳ୍ପ ବିଦ୍ୟାର ପ୍ରସାର ଓ ପ୍ରଚାର କରାଇ ପୃଥିବୀକୁ ଧାରଣ କରିବାରେ ପ୍ରୟାସ କରିଛନ୍ତି ।

ବିଭିନ୍ନ ଯୁଗରେ ବିଶ୍ୱକର୍ମାଙ୍କର ବିବିଧ ରୂପରେଖ ରହିଛି । ସତ୍ୟରେ ପଞ୍ଚମୁଖ ବିଶିଷ୍ଟ ବିଶ୍ୱକର୍ମା ଶ୍ୱେତ ହଂସ ବାହନରେ, ତ୍ରେତାରେ ଭୁଜାବତାର ତିନେତ୍ର ବିଶିଷ୍ଟ ବିଶ୍ୱକର୍ମା କାକଚୁଆ ପୃଷ୍ଠରେ, ଦ୍ୱାପରରେ ଅରୁଣ ବର୍ଣ୍ଣର ବିଶ୍ୱକର୍ମା ଯୁବକାବସ୍ଥାରେ ହସ୍ତୀ ବାହନରେ ଅବତରଣ କରି ଧର୍ମ ସ୍ଥାପନରେ ପୁରୋଧା ଭୂମିକା ନିର୍ବାହ କରିଥିଲେ । କଳି ଯୁଗରେ ଦ୍ୱି-ଭୁଜଧାରୀ ବୃଦ୍ଧ ଅନନ୍ତ ମହାରଣା ରୂପରେ ଉତ୍କଳରେ ହିଁ ବିଶ୍ୱଗୁରୁ ବିଶ୍ୱକର୍ମାଙ୍କର ଆବିର୍ଭାବ ଘଟିଥିଲା । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମାତା ସୁଭଦ୍ରାଙ୍କ ସମେତ ସୁଦର୍ଶନ ଚକ୍ର (ଚତୁର୍ଦ୍ଧା ମୂରତି) ନିର୍ମାଣ କରି ପୂର୍ଣ୍ଣବ୍ରହ୍ମ ଯୁଗ ପୁରୁଷୋତ୍ତମ ଜଗତର ନାଥ ଜଗନ୍ନାଥଙ୍କ ମଧ୍ୟରେ ବିଶ୍ୱକର୍ମା ଲୀନ ହୋଇଯାଇଛନ୍ତି । ତେଣୁ ଯେ ବିଶ୍ୱକର୍ମା, ସେ ହିଁ ଜଗନ୍ନାଥ ।

ସମ୍ପ୍ରତି ସମଗ୍ର ବିଶ୍ୱରେ ବୈଜ୍ଞାନିକ ଜ୍ଞାନ-କୌଶଳରେ ବ୍ୟାପକ ଅଗ୍ରଗତି ଘଟିଛି । ସେଇ ପରମ ସ୍ରଷ୍ଟା ପୁରୁଷଙ୍କ କରୁଣାରୁ ମଣିଷ ଚନ୍ଦ୍ର ଓ ମଙ୍ଗଳ ପୃଷ୍ଠରେ ଅବତରଣ କରିବାକୁ ସକ୍ଷମ ହେବା ସହ ଦୈବ କର୍ତ୍ତୃତ୍ୱକୁ ବହୁ ମାତ୍ରାରେ ଭଣା କରି ଦେଇଛି । ଅସୀମ ଆଡ଼କୁ ପୃଥିବୀ କ୍ରମଶଃ ଆଗେଇ ଚାଲିଛି । କାରିଗରୀ ଜ୍ଞାନ-କୌଶଳ, ଶିଳ୍ପ ବିଜ୍ଞାନ, ସୂକ୍ଷ୍ମ କାରୁକଳାରେ ଅତୁଳନୀୟ ଅଗ୍ରଗତି ଘଟିଛି । ସବୁ ସତ୍ତ୍ୱେ ମନରେ ଆଶଙ୍କା ଦେଖା ଦେଇଛି । ସମଗ୍ର ବିଶ୍ୱରେ ଅଶାନ୍ତିର ଉଦ୍‌ବେଳନ ଦେଖାଦେଇଛି । ଏକ ଅନିଶ୍ଚିତ ସମ୍ଭାବନା ସମସ୍ତଙ୍କ ମନକୁ ଆଘାତ କରି ଚାଲିଛି ଅବିରାମ ଭାବେ । ନିମିଷକ ମଧ୍ୟରେ ସମଗ୍ର ସୃଷ୍ଟି ଧ୍ୱଂସ ପାଇଯିବାର ଆଶଙ୍କାରେ ବିଶ୍ୱ ଜନମାନସ ଆତଙ୍କିତ ହୋଇପଡ଼ିଛି । ତେବେ ଏ ସବୁର ମୁଖ୍ୟ କାରଣ ହେଲା, ମଣିଷର ଅପରିଣାମଦର୍ଶିତା । ମଣିଷର ପ୍ରତିସ୍ପର୍ଦ୍ଧା । ବିଶ୍ୱ ସ୍ରଷ୍ଟାଙ୍କ ପ୍ରଦତ୍ତ ଜ୍ଞାନ-ବିଜ୍ଞାନକୁ ଉଚିତ ମାର୍ଗରେ ବିନିଯୋଗ ଓ ସଂଗଠନାତ୍ମକ କାର୍ଯ୍ୟରେ ଉପଯୋଗ କରିବା କ୍ଷେତ୍ରରେ ମଣିଷ ପଛଘୁଞ୍ଚା ଦେଉଛି; ପରନ୍ତୁ ଧ୍ୱଂସର ଶୀତଳ ସ୍ପର୍ଶକୁ ସେ ଆଦରି ନେଉଛି । ଏଥିରୁ କ'ଣ ମୁକ୍ତି ମିଳିବ ନାହିଁ ? ସମଗ୍ର ବିଶ୍ୱରେ କ'ଣ ସୌଭ୍ରାତୃତ୍ୱ ପ୍ରତିଷ୍ଠା ସମ୍ଭବ ହେବନି ? ମଣିଷ କ'ଣ ତା'ର ଅପରିଣାମଦର୍ଶିତା ପାଇଁ ଅନୁତାପ କରି ରଚନାତ୍ମକ କାର୍ଯ୍ୟରେ ବିଶ୍ୱ ସ୍ରଷ୍ଟାଙ୍କ ପ୍ରଦତ୍ତ ବୈଜ୍ଞାନିକ ଜ୍ଞାନ କୌଶଳକୁ ଉପଯୋଗ କରି ନାହିଁ ।

ଏହି ବିପତ୍ତିରୁ ବିଶ୍ୱଗୁରୁ ବିଶ୍ୱକର୍ମା ହିଁ ଏକମାତ୍ର ପରିତ୍ରାଣ କରିପାରିବେ । ମଣିଷ ମନରେ ପୁଣି ସୃଷ୍ଟିର ପ୍ରତ୍ୟୟ ଭରି ଦେବେ । ତା'ର ପ୍ରତ୍ୟେକଟି କାର୍ଯ୍ୟ କଳାପକୁ ନିୟନ୍ତ୍ରଣ କରିବେ । ଆସନ୍ତୁ ଆଜିର ଏହି ପବିତ୍ର ପାର୍ବଣରେ ସେହି ଦେବଶିଳ୍ପୀ ବିଶ୍ୱରୂପୀ ବିଶ୍ୱକର୍ମାଙ୍କ ଚରଣାରବିନ୍ଦରେ ଭକ୍ତି ପ୍ରଣତି ଜଣାଇବା, ପ୍ରାର୍ଥନା କରିବା ଏବଂ ଏକ ସ୍ୱରରେ ମନ୍ତ୍ର ଉଚ୍ଚାରଣ କରିବା – "ଜୟ ବିଶ୍ୱକର୍ମା" ।

# ଶିକ୍ଷା ବନାମ ଶିକ୍ଷକ–ଏକ ଦୃଷ୍ଟିପାତ

* ଚପଳା ପଣ୍ଡା

'ଶିକ୍ଷା' ଏପରି ଏକ ଶବ୍ଦ ଯାହାକି ଶିଶୁ ଭୂମିଷ୍ଠ ହେବା ଦିନଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ଶିଖିଥାଏ । ଏହା ନୈତିକ, ଶାରିରୀକ, ସାଂସ୍କୃତିକ, ସାମାଜିକ ଅଥବା ବୌଦ୍ଧିକ ଶିକ୍ଷା ହୋଇଥାଇ ପାରେ । ଲଜ୍ (Lodge) କହନ୍ତି "ଶିକ୍ଷା ହିଁ ଜୀବନ ଓ ଜୀବନ ହିଁ ଶିକ୍ଷା" । ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ଶିକ୍ଷା ବସ୍ତୁତଃ ମଣିଷକୁ ଏକ ପୂର୍ଣ୍ଣ ମଣିଷରେ ପରିଣତ କରିପାରେ । ଏଡ୍‌ୱାର୍ଡ଼ ଥ୍ରୀଙ୍ଗ୍ (Edward Thring) ଙ୍କ ମତରେ– "ଶିକ୍ଷା ଏକ ନିରବଚ୍ଛିନ୍ନ ପ୍ରକ୍ରିୟା ଯାହାକି ପ୍ରତ୍ୟେକ ମଣିଷଠାରେ ପ୍ରବାହିତ ହୋଇଥାଏ । ତେଣୁ "ଶିକ୍ଷା" ଜୀବନ ଧାରାକୁ ପରିବର୍ତ୍ତନ କରିଥାଏ ଏବଂ ଏଥିପାଇଁ ଶିକ୍ଷକଙ୍କର ଭୂମିକା ଅପରିହାର୍ଯ୍ୟ ।

ଗୁରୁକୁଳାଶ୍ରମଠାରୁ ଆରମ୍ଭକରି ଆଧୁନିକ ଶିକ୍ଷା ପ୍ରଣାଳୀକୁ ଅବଲୋକନ କଲେ ଜଣାଯାଏ ଯେ ଏହା ଯୁଗୋପଯୋଗୀ ହୋଇପାରିଛି । ସେତେବେଳର ଶିକ୍ଷା–ଶ୍ରୁତି, ସ୍ମୃତି, ବେଦ, ଉପନିଷଦ୍, ଧନୁର୍ବିଦ୍ୟା ଓ ତନ୍ତ୍ରବିଦ୍ୟା ମଧ୍ୟରେ ସିମୀତ ରହୁଥିବାବେଳେ ଆଧୁନିକଯୁଗର ଶିକ୍ଷା ପ୍ରଣାଳୀରେ ଘୋର ପରିବର୍ତ୍ତନ ଘଟିଛି । ସମୟ ଓ ପରିସ୍ଥିତି ଅନୁସାରେ ବିଦ୍ୟାର ମୂଲ୍ୟାୟନରେ ମଧ୍ୟ ଅଶେଷ ଉନ୍ନତି ଘଟିପାରିଛି । ସେ ଯାହା ହେଉନା କାହିଁକି ଯେକୌଣସି ଶିକ୍ଷା ପ୍ରଣାଳୀରେ ମଧ୍ୟ ଗୁରୁଙ୍କ ସ୍ଥାନ ନିଶ୍ଚିତ ରୂପେ ଗୁରୁତ୍ୱପୂର୍ଣ୍ଣ ।

'ଗୁରୁ' ଶବ୍ଦ ଅର୍ଥଗତ ଦୃଷ୍ଟିରୁ ବିଚାର କଲେ "ଶ୍ରେଷ୍ଠତ୍ୱ"ର ପ୍ରମାଣ ମିଳେ । ପାଞ୍ଚ ପ୍ରକାର ଗୁରୁଙ୍କ ମଧ୍ୟରୁ ଆଧୁନିକ ଯୁଗରେ ବିଦ୍ୟାଗୁରୁଙ୍କ ସ୍ଥାନ ଅତି ଉଚ୍ଚରେ । କାରଣ ବିଦ୍ୟାଗୁରୁ ଅନ୍ୟ ଶ୍ରେଣିଗୁରୁଙ୍କର କାର୍ଯ୍ୟ ଅକ୍ଳେଶରେ କରିଦେଇ ପାରନ୍ତି ମାତ୍ର ଅନ୍ୟ ଶ୍ରେଣିଗୁରୁ ବିଦ୍ୟାଗୁରୁଙ୍କ କାମ କରିବା ଅତି କଷ୍ଟକର ।

ଶିଶୁ ଯେକୌଣସି ପରିବେଶରେ ଜନ୍ମଲାଭ କରିଥିଲେ ମଧ୍ୟ ଶିକ୍ଷକ ତା' ପାଇଁ ଏକ ଆଧାର ତୁଲ୍ୟ । ଦେଶର ଭାଗ୍ୟ ନିର୍ମାଣ ଓ ଗଠନମୂଳକ କାର୍ଯ୍ୟପନ୍ଥା ସ୍ଥିର କରିବାର ଦାୟିତ୍ୱ ନେଇ ଶିକ୍ଷକ ଭବିଷ୍ୟତ କର୍ଣ୍ଣଧାରଙ୍କୁ ସୃଷ୍ଟି କରିଥାନ୍ତି । ସମାଜର ଦୃଷ୍ଟି ଶିକ୍ଷକଙ୍କ ଉପରେ ନିବଦ୍ଧ । ବାସ୍ତବରେ କହିବାକୁ ଗଲେ ଶିକ୍ଷକଙ୍କ ଭୂମିକା ଶିକ୍ଷା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ । ସେ ନିଜକୁ ସମାଜର ପଥ ପ୍ରଦର୍ଶକ ତଥା ବ୍ୟକ୍ତି ବିଶେଷର ତତ୍ତ୍ୱାବଧାରକ ରୂପେ ବ୍ୟକ୍ତିର ଚିନ୍ତନ, ଭାବନା ଓ କାର୍ଯ୍ୟରେ ଦିଗ୍‌ଦର୍ଶନ ଦେଇଥାଏ । ସେ ନିଜ ଜୀବନକୁ ଶିଳ୍ପୀ ପରି ତିଳତିଳ କରି ନିଜର ନିହଣ ଓ ହାତୁଡ଼ି ସାହାଯ୍ୟରେ ପଥର ଦେହରେ ସୌନ୍ଦର୍ଯ୍ୟତା ଫୁଟାଇବା ପରି ଶିଶୁଟିକୁ ମଣିଷ ପରି ମଣିଷଟିଏ ଗଢ଼ି ତୋଳିବା ପାଇଁ ଆପ୍ରାଣ ଚେଷ୍ଟା କରିଥାଏ ।

ଆଧୁନିକ ଶିକ୍ଷାଦାନ ପଦ୍ଧତିକୁ ଅବଲୋକନ କଲେ ସାଧାରଣତଃ ତିନିପ୍ରକାର ଶିକ୍ଷାଦାନ ପ୍ରଣାଳୀ ଆମ ଆଖିଆଗକୁ ଆସିଥାଏ । ଯଥା:– (୧) ଆନୁଷ୍ଠାନିକ ଶିକ୍ଷା (Formal Education)(ବିଦ୍ୟାଳୟ ପ୍ରଭୃତି ଅନୁଷ୍ଠାନ), (୨) ଅଣଆନୁଷ୍ଠାନିକ ଶିକ୍ଷା (Nonformal Education) (ବିଦ୍ୟାଳୟ ଗୃହ ନଥାଇ), (୩) ଘରୋଇ ଶିକ୍ଷା (Informal) ।

ଯେକୌଣସି ପ୍ରଣାଳୀ ହେଉନା କାହିଁକି ଶିକ୍ଷକଙ୍କର ଶିକ୍ଷାଦାନ ଦର୍ପଣ ପରି ଛାତ୍ର/ଛାତ୍ରୀଙ୍କ ମନରେ ପ୍ରତିବିମ୍ବ ପକାଇ ପାରିଥାଏ । ଯଦି ଭୁଲବଶତଃ ଶିକ୍ଷକ କୌଣସି ପିଲାକୁ ଭୁଲ ତଥ୍ୟଟିଏ ବତାଇ ଦେଇଥାନ୍ତି ଏବଂ ଉକ୍ତ ପିଲାଟିର ଅଭିଭାବକ ସଂଶୋଧନ ରୂପରେ ଠିକ୍ ତଥ୍ୟଟିର ସତ୍ୟାନୁସନ୍ଧାନ କରିବାକୁ ପ୍ରବର୍ତ୍ତାଇ ଥାଆନ୍ତି, ତଥାପି ପିଲାଟି ଉକ୍ତ ତଥ୍ୟଟିକୁ ଭୁଲବୋଲି ସ୍ୱୀକାର କରିବାକୁ କୁଣ୍ଠିତ ହୋଇଥାଏ । ତା' ମନରେ ଦୃଢ଼ ଧାରଣା ଯେ ଶିକ୍ଷକ ଯାହା ଶିକ୍ଷା ଦେଇଛନ୍ତି ତାହା ନିର୍ଭୁଲ ଓ ବିଧିସଙ୍ଗତ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଶିକ୍ଷକଙ୍କ ଭୂମିକା ଶିକ୍ଷାଦାନକ୍ଷେତ୍ରରେ କେତେଦୂର ପ୍ରଭାବଶାଳୀ ?

ଶିଶୁଟି ଯେଉଁ ସମୟରେ ଶିକ୍ଷା ପାଇବା ପାଇଁ ଶିକ୍ଷକଙ୍କ ନିକଟକୁ ଆସେ ସେତେବେଳେ ତା'ର ଜ୍ଞାନ କଞ୍ଚାମାଟିପରି । ଶିକ୍ଷକ ସେହି ଅବସ୍ଥାରେ ଶିଶୁଟିର ଉପଯୁକ୍ତ ଯତ୍ନ ନେଇପାରିଲେ ସେ ତା'ର ଶିକ୍ଷାକୁ ନିଶ୍ଚିତ ରୂପେ ମାର୍ଜିତ କରିପାରିବ । ପ୍ରତ୍ୟେକ ଅଭିଭାବକ ଶ୍ରେଣୀର ଆଶା ଓ ଆସ୍ଥାନେଇ ନିଜର ଶିଶୁଟିକୁ ଶିକ୍ଷକଙ୍କ ଉପରେ ନ୍ୟସ୍ତ କରିଥାଆନ୍ତି । ସେମାନଙ୍କୁ ଉପଯୁକ୍ତ ଭାବେ ଗଢ଼ି ତୋଳିବାର ଦାୟିତ୍ୱ କେବଳ ଶିକ୍ଷକଙ୍କର ବୋଲି ସେମାନେ ଭାବିଥାନ୍ତି ।

ସାଧାରଣତଃ ଦେଖିବାକୁ ଗଲେ ଶିଶୁଟି ତା'ର ଦୈନନ୍ଦିନ ଜୀବନରୁ ପ୍ରାୟତଃ ଛଅଘଣ୍ଟା ଶିକ୍ଷାନୁଷ୍ଠାନରେ କଟାଇଥାଏ । ଏହି ସମୟ ଭିତରେ ଶିକ୍ଷକଙ୍କ ଶିକ୍ଷାଦାନ ସହ ପ୍ରକାରାନ୍ତରେ ତାଙ୍କର ଚାଲିଚଳନ, ଆଚାର ବ୍ୟବହାର, ଭାବଭଙ୍ଗୀ, କଥାବାର୍ତ୍ତା ଇତ୍ୟାଦି ଯାବତୀୟ କାର୍ଯ୍ୟକଳାପ ଶିଶୁ ଉପରେ ପ୍ରଭାବ ପକାଇଥାଏ । ତେଣୁ ଶିକ୍ଷକଙ୍କ ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ, ତାହା ହିଁ ବିଚାର୍ଯ୍ୟ ।

ଶିକ୍ଷା ଅବଶ୍ୟ ଶିକ୍ଷକ ଓ ଅଭିଭାବକଙ୍କ ସହଯୋଗ ଉପରେ ନିର୍ଭର କରେ । ଗୋଷ୍ଠୀ ସହଯୋଗ ଶିକ୍ଷାକ୍ଷେତ୍ରରେ କଷଟି ପଥର ପରି । ତେଣୁ ଶିକ୍ଷକ ଶିକ୍ଷାଦାନ ସହ ଗୋଷ୍ଠୀ ମଧ୍ୟରେ ସହଯୋଗ ଓ ସମନ୍ୱୟ ରକ୍ଷା କରିବା ଉଚିତ୍ । ଏହା ସ୍ୱତଃପ୍ରବୃତ୍ତ, ପ୍ରେରଣାତ୍ମକ କିମ୍ବା ବାଧ୍ୟତାମୂଳକ ଭାବେ କରାଯାଇପାରେ । କାରଣ ଏହା ଦ୍ୱାରା ଶିଶୁର ପରିବେଶ ଓ ପରିସ୍ଥିତିକୁ ସହଜରେ ଅନୁଧ୍ୟାନ କରାଯାଇପାରେ । ଶିଶୁର ସାମୂହିକ ତଥା ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଶିକ୍ଷା ଏକ ଉପାଦାନ ହୋଇଥିବାରୁ ଶିକ୍ଷକ ଶିଶୁମନରେ ଜାତୀୟତା ଭାବ ଉଦ୍ରେକ କରିବା ସଙ୍ଗେ ସଙ୍ଗେ ବୈଜ୍ଞାନିକ ଚିନ୍ତାଧାରାର ଉନ୍ମେଷ, କର୍ମାନୁଭୂତି ତଥା ପରିବେଶ ସୁରକ୍ଷା ଦିଗରେ ପ୍ରେରଣା ଦେବା ଉଚିତ୍ ।

ଶିକ୍ଷକ ଓ ଛାତ୍ରଛାତ୍ରୀ ପରସ୍ପର ପରିପୂରକ । ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱପରି "ଦୁହେଁ ଦୁହିଁଙ୍କର, ଦୁହେଁ ଦୁହିଁଙ୍କ ପାଇଁ ଓ ଦୁହେଁ ଦୁହିଁଙ୍କ ଦ୍ୱାରା" ସମାଜରେ ନିଜ୍ ସ୍ଥିତିକୁ ବଜାୟ ରଖିଥାନ୍ତି । ଶିକ୍ଷାକୁ ଏକ ବଳୟ ରୂପେ ଧରାଯାଇ ଛାତ୍ରଛାତ୍ରୀଙ୍କୁ କେନ୍ଦ୍ରବିନ୍ଦୁ ରୂପେ ରଖାଗଲେ, ଶିକ୍ଷକ ଏ ଦୁହିଁଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନର ଏକ ମାପକ ସଦୃଶ ।

ଶିକ୍ଷକ, ଶିକ୍ଷାଦାନ କ୍ଷେତ୍ରରେ ମୂଳପିଣ୍ଡ ହୋଇଥିବା ଯୋଗୁଁ ଓ ଶିକ୍ଷକଙ୍କ ଆଚରଣ ଛାତ୍ରଛାତ୍ରୀ ଉପରେ ପ୍ରଭାବ ପକାଉଥିବାରୁ ସେ ନିଜକୁ ସଚେତନ କରାଇ, ଛାତ୍ରଛାତ୍ରୀମାନଙ୍କ ସହ ସୁସମ୍ପର୍କ ସ୍ଥାପନ କରି, ଅଭିଭାବକମାନଙ୍କ ସହ ଆଲୋଚନା କରି, ସମାଜ ସହ ନିଜକୁ ଖାପଖୁଆଇ ଶିକ୍ଷାଦାନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କଲେ ଶିକ୍ଷା, ଦେଶ ଓ ଜାତିର ସର୍ବବିଧ ଉନ୍ନତି ହୋଇପାରିବ । ଶିକ୍ଷକଙ୍କ କର୍ତ୍ତବ୍ୟ, ଦାୟିତ୍ୱ, ନିଷ୍ଠା ଓ ଉଦ୍ୟମର ବୀଜ ବପନରେ ଏକ ସମୃଦ୍ଧିଶାଳୀ ଅମୃତ ବୃକ୍ଷରୂପୀ ଦେଶର ପରିକଳ୍ପନା କରାଯାଇପାରେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଅବଶ୍ୟ ଶିକ୍ଷକ ଶିକ୍ଷାର ଗୁଣାତ୍ମକ ଉନ୍ନତି ନିମନ୍ତେ ଆମର ଲୋକପ୍ରିୟ ସରକାର ନୂତନ ପରିକଳ୍ପନା ମାନ ହାତକୁ ନେଇଛନ୍ତି । ଜାତୀୟ ଶିକ୍ଷାନୀତି ଅନୁସାରେ ଶିକ୍ଷାକୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି ଏବଂ ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ କରିବା ପାଇଁ ବିଭିନ୍ନ ଯୋଜନାମାନ ପ୍ରସ୍ତୁତ କରାଯାଇଛି । ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦ (SCERT) ଆନୁକୂଲ୍ୟରେ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ସ୍ୱତନ୍ତ୍ର ତାଲିମ୍ ଦିଆଯାଇପାରୁଛି ଏବଂ ଛୋଟ ପିଲାମାନଙ୍କ ପାଇଁ ଉପଯୋଗୀ କେତେଗୁଡ଼ିଏ ପୁସ୍ତକ ରଚନା ଓ ପ୍ରକାଶ କରି ସେମାନଙ୍କୁ ଶ୍ରେଣୀରେ ବ୍ୟବହାର କରିବାକୁ ଦିଆଯାଉଛି । ପ୍ରଶିକ୍ଷଣ ବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକର ସାଙ୍ଗଠନିକ ପରିବର୍ତ୍ତନ ଓ ବୈଜ୍ଞାନିକ ବିକାଶ ସାଧିତ ହୋଇଛି । ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ ସରକାରୀ ମାଧ୍ୟମିକ ପ୍ରଶିକ୍ଷଣ ବିଦ୍ୟାଳୟକୁ ଜିଲ୍ଲା ଶିକ୍ଷା ଓ ପ୍ରତିଷ୍ଠାନକୁ ଉନ୍ନୀତ କରାଯାଇ ପ୍ରାଥମିକ ଓ ନିମ୍ନମାଧ୍ୟମିକ ବିଦ୍ୟାଳୟର ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ତାଲିମ୍ ଦିଆଯାଉଛି । ରାଜ୍ୟରେ ଥିବା କେତେକ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ (College of Teacher Education ବା CTE) ଭାବରେ ନାମକରଣ କରାଯାଇ ଶିକ୍ଷକ ଶିକ୍ଷାର ଗୁଣାତ୍ମକ ବିକାଶ କରାଯାଉଛି । ବିଭିନ୍ନ ଗଠନମୂଳକ ପ୍ରକଳ୍ପ ମାଧ୍ୟମରେ ଶିକ୍ଷକ ଶିକ୍ଷାର ଗୁଣାତ୍ମକ ବିକାଶ ନିମନ୍ତେ ରାଜ୍ୟ ସରକାରଙ୍କ ଉଦ୍ୟମ ବାସ୍ତବିକ୍ ପ୍ରଶଂସନୀୟ ।

ମାର୍ଫତ୍-ଡକ୍ଟର ବୃନ୍ଦାବନ ପଣ୍ଡା,
ଅଧ୍ୟକ୍ଷ, କ୍ୟାପିଟାଲ୍ ଆଇନ ମହାବିଦ୍ୟାଳୟ,
ଭୁବନେଶ୍ୱର ।



ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ ସ୍ୱାୟତ୍ତ ଶାସନ ଦିବସ ଅବସରରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ପାଟଶାଣୀଙ୍କ ଉଦ୍‌ବୋଧନ ।

# ଏକଲବ୍ୟ

* ଶ୍ରୀ ନିକୁଞ୍ଜକିଶୋର କାନୁନ୍‌ଗୋ

ପୁରୁଣା କାଳର କଥା,
ଯେ ତାହା ଶୁଣିବ ତା' ମଥା ଘୁରିବ
ଆଦରଣ ଶିଷ୍ୟ ଗାଥା ।

ହସ୍ତିନାର ରାଜପୁଏ,
ଗୁରୁ ଦ୍ରୋଣ ସାଥେ ଚଳିଲେ ବନସ୍ତେ
ପ୍ରତି କାନ୍ଧେ ଧନୁଟିଏ ।

ଧନୁ–ଚାଳନା ପରଖ,
ଗୁରୁଙ୍କ ଆଗରେ ଦେବା ଛଳେ କଲେ
ପଶୁପକ୍ଷୀଠାରେ ଲକ୍ଷ୍ୟ ।

ଦେଖିଲା କୁମାର ଜଣେ,
ତୀର ଅଛି ଲାଖି କୁକୁର ତଣ୍ଟିକି
ଧାଇଁଥିଲା ସିଏ ବଣେ ।

ଆରେ ଏ କି ଅଦ୍ଭୁତ !
ସେ ରାଜ କୁମାର କରିଲା ତହଲ
ଆସ ସକଳେ ତୁରିତ !

ଶୁଣି ସେ କୁମାର ପାଟି,
ହସ୍ତିନା କୁମରେ ଏକାଠି ଜୁଟିଲେ
ଧରିଲେ ସେ ଶ୍ୱାନ ଗୋଟି ।

ଏ ତ ଆଚମ୍ବିତ କଥା !
ଏ ଅଜବ ଶର ହେବ ବା କାହାର ?
ଘୂରିଲା ସବୁରି ମଥା ।

ଆଲୋଚନା କରୁ କରୁ,
ଧରି ଧନୁଶର ବାଳକ ଶବର
ଧାଇଁଥିଲା ଡିଙ୍କେ ଦୂରୁ !

ମାରିଅଛି ଶର ମୁହିଁ,
ଛନ୍ଦ ଛନ୍ଦ କ୍ଷଣେ ବାଢ଼ିବି ଏ କ୍ଷଣେ
କହୁଥିଲା ପରା ସେହି !

ଅବ୍ୟର୍ଥ ତାହାର ଲକ୍ଷ୍ୟ,
ପାର୍ଥ ସମ ବୀର କିଏ ଏ ଶବର ?
ଗୁରୁ ଦେଖିଲେ ପ୍ରତ୍ୟକ୍ଷ ।

ପଚାରିଲେ ଦ୍ରୋଣ ଗୁରୁ,
'କି' ନାମ ତୋହର ବାଳକ ଶବର
କିଏ ତୋର ବିଦ୍ୟା ଗୁରୁ ?'

ଧରି ଗୁରୁ ପାଦ ଦନ୍ତୁ,
କୁହେ, "ଗୁରୁଦେବ ନାମ ଏକଲବ୍ୟ
ଦ୍ରୋଣାଚାର୍ଯ୍ୟ ମୋର ଗୁରୁ !"

ଚଡ଼କ ଗଲା କି ପଡ଼ି !
ହୋଇଲେ ଆଶ୍ଚର୍ଯ୍ୟ ଗୁରୁ ଦ୍ରୋଣାଚାର୍ଯ୍ୟ
ବୋଇଲେ, 'ରେ ମିଥ୍ୟାଚାରୀ !
ଥରେ ହେଲେ ମୁହିଁ ଶିକ୍ଷା ଦେଇ ନାହିଁ
ଗୁରୁ ହେଲି କେଉଁପରି ?'

ବିନୟେ କୁହେ ଶବର,
"ମିଛ ନୁହେଁ ଗିର ତୁମେ ଗୁରୁ ମୋର
ସାକ୍ଷାତେ ମୋର ଈଶ୍ୱର !

ମନେ ପକା ଗୁରୁଦେବ,
ହସ୍ତିନାକୁ ଥରେ ତୋ ବିଦ୍ୟା ମନ୍ଦିରେ
ଯାଇଥିଲା ଏକଲବ୍ୟ ।

ପଢ଼ିବା ପାଇଁ ଗୁହାରି,
'ରାଜା ପୁଅ ମେଳେ ପଢ଼ିବା କ ଚଳେ ?'
କହି କାଟିଲ ମୋହରି ।

ନିରାଶ ମନରେ ଫେରି,
କୁଡ଼ିଆରେ ମୋର ଗଢ଼ି ମୂର୍ତ୍ତି ତୋର
ଅଧ୍ୟୟନେ ମନ ଦେଲି ।

ତୋ ପଦେ ଭକତି ଢାଳି,
ଅସ୍ତ୍ରଶସ୍ତ୍ର ଶିକ୍ଷା ବେଦ ମନ୍ତ୍ର ଦୀକ୍ଷା
ସକଳ ହାସଲ କଲି ।

ଗୁରୁଦେବ ହେ ଆପଣ,
ମୋ ପ୍ରାଣ ଠାକୁର ବ୍ରହ୍ମା ମହେଶ୍ୱର
ପରଂବ୍ରହ୍ମ ନାରାୟଣ !

କରୁଛି କୋଟି ଜୁହାର,
କହ ଦେବ ଭାବି କି ଦକ୍ଷିଣା ଦେବି ?
ନିବେଦନ ଏହି ମୋର ।"

କହିଲେ ଗୁରୁ ସରାଗେ,
'ଡାହାଣ ହାତର ତୋ ବୁଢ଼ା-ଆଙ୍ଗୁଳି
କାଟି ଦିଅ ଏଇଲାଗେ ।
ସେହି ଦକ୍ଷିଣାରେ ମନ ମୋର ବଳେ
ସେହି ଦକ୍ଷିଣା ମୁଁ ମାଗେ ।'

ସେହିକ୍ଷଣି ବୀର ଶିଷ୍ୟ,
କାଟି ତା' ଆଙ୍ଗୁଠି ଗୁରୁ ପଦେ ଭେଟି
ଦେଲା ହୋଇ ହସ ହସ ।

ଅପୂର୍ବ ଗୁରୁ-ଦକ୍ଷିଣା,
ପ୍ରାଣ ଦାନୁ ବଳି ମହତ ଆହୁରି
ନାହିଁ ତ ତା'ର ତୁଳନା !

ଆଶିଷ ଢାଳିଲେ ଗୁରୁ,
ଆଚମିତ ହେଲେ ଦକ୍ଷିନା କ୍ରମରେ
ଦେବଗଣ ସ୍ୱର୍ଗପୁରୁ ।

ଆକାଶୁ ଫୁଲ-ବରଷା,
ହୋଇଲା ସେକାଳେ ଏକଲବ୍ୟ ପରେ
ଦେଖୁ ଦେଖୁଣୁ ସହସା ।

ଦେବତା-ଆଶିଷ-ଫୁଲ,
ଧନ୍ୟ ବୀର ଶିଷ୍ୟ ଏକଲବ୍ୟ ଯଶ
ଅକ୍ଷୟ ଅମୂଲ ମୂଲ ।

ଏକଲବ୍ୟର କାହାଣୀ,
ତା' ମନର ଶକ୍ତି ଦୃଢ ଗୁରୁ ଭକ୍ତି
ଜଗତ ପାରିଲା ଜାଣି ।

ଏହି ଏକଲବ୍ୟ କଥା,
କାଳ କାଳକୁ ତ ରହିଛି ଜୀବିତ
ଗୁରୁ ଭକ୍ତି କୀର୍ତ୍ତି-ଗାଥା ।

---

ବି: ଆର୍ଃ ସି-୯୭,
ପାଣ୍ଡବ ନଗର, ଭୁବନେଶ୍ୱର-୭୫୧୦୧୮ ।




ପାରାଦ୍ୱୀପ ଉପକୂଳ ରକ୍ଷୀଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଟେମ୍ପୋ ଟ୍ରାକ୍ସ୍ ପ୍ରଦାନ କରୁଛନ୍ତି (୧୧/୮) ।

# ନୂଆଖାଇ

* ଶ୍ରୀ ଦେବରାଜ ପ୍ରଧାନ

"ନୂଆଖାଇ" ଓଡ଼ିଶାର ପଶ୍ଚିମାଞ୍ଚଳ ଅଧିବାସୀ ମାନଙ୍କର ପ୍ରଥମ ପର୍ବ ଭାବରେ ସର୍ବଜ୍ଞ ପରିଗଣିତ । ଏହା ସମ୍ବଲପୁର, ସୁନ୍ଦରଗଡ଼, ବଲାଙ୍ଗୀର, କଳାହାଣ୍ଡି, ବୌଦ୍ଧ, ଢେଙ୍କାନାଳର ଆଠମଲ୍ଲିକ ଅଞ୍ଚଳ ଏବଂ ମଧ୍ୟପ୍ରଦେଶର ରାୟଗଡ଼ା, ରାୟପୁର ଏବଂ ବିଳାସପୁର ଜିଲ୍ଲାମାନଙ୍କରେ ଏହି ପର୍ବ ମହା ସମାରୋହରେ ପାଳିତ ହୁଏ । ଏହା ସାଧାରଣତଃ ଭାଦ୍ରବ ମାସ ଶୁକ୍ଳ ପକ୍ଷର, ଭିନ୍ନ ଭିନ୍ନ ଶୁଭ ତିଥିମାନଙ୍କରେ ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ ହୁଏ । କିନ୍ତୁ ସୁଖର ବିଷୟ ଗତବର୍ଷଠାରୁ ଗୋଟିଏ ତିଥି ତଥା, ଭାଦ୍ର ପଞ୍ଚମୀରେ "ନୂଆଖାଇ" ପାଳନ କରିବା ପାଇଁ ସମସ୍ତେ ଏକମତ ହୋଇଛନ୍ତି ।

ଓଡ଼ିଶାରେ "ବାର ମାସରେ ତେର ଯାତ୍ରା" ବିଷୟ ଜଣା ଅଧିକେ ପ୍ରାୟ ସମସ୍ତଙ୍କୁ ଜଣା । ପ୍ରତ୍ୟେକ ଯାତ୍ରା ଓଷା କିମ୍ବା ବ୍ରତ କୌଣସି ନା କୌଣସି ଠାକୁର କିମ୍ବା ଠାକୁରାଣୀଙ୍କ ନିତିଦିନିଆ ନୀତି ସହିତ ଜଡ଼ିତ । ଉଦାହରଣ ସ୍ୱରୂପ ଜଗନ୍ନାଥଙ୍କ ଗୁଣ୍ଡିଚା ଯାତ୍ରା ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟାରେ, ଜଗତ୍‌ଜନନୀ ଦୁର୍ଗାଙ୍କର ଦିଗ୍‌ବିଜୟ ଯାତ୍ରା ଦଶହରା ଦଶମୀରେ, ଶୀତଳଷଷ୍ଠୀ ଯାତ୍ରା ଜ୍ୟେଷ୍ଠ ଶୁକ୍ଳପକ୍ଷ ଷଷ୍ଠୀରେ, ସେହିପରି ପଶ୍ଚିମ ଓଡ଼ିଶାର "ନୂଆଖାଇ" ପର୍ବ ବିଭିନ୍ନ ତିଥିରେ ଠାକୁରାଣୀମାନଙ୍କର ନୂତନ "ଅନ୍ନଭକ୍ଷଣ" ରୂପେ ପ୍ରଚଳିତ ଥିଲା । (କିନ୍ତୁ ସୁଖର ବିଷୟ ଚଳିତ ବର୍ଷଠାରୁ ଏହା ଭାଦ୍ର ପଞ୍ଚମୀ ତିଥିରେ ଅନୁଷ୍ଠିତ ହେବ) । ସମ୍ବଲପୁରର ସମଲେଶ୍ୱରୀ, ବଲାଙ୍ଗୀର ପାଟଣାର ପାଟଣେଶ୍ୱରୀ, ସୋନପୁରର ସୁରେଶ୍ୱରୀ, କଳାହାଣ୍ଡିର ମାଣିକେଶ୍ୱରୀ ବୌଦ୍ଧ ଅଞ୍ଚଳର ମାହେଶ୍ୱରୀ ଏବଂ ପଦ୍ମପୁର ଅଞ୍ଚଳର ବିନ୍ଧ୍ୟବାସିନୀ ଦେବୀମାନଙ୍କ ପାଖରେ କୃଷୀର ନୂତନ ଅମଳ ଧାନର ଭୋଗ ପ୍ରଥମେ ସମର୍ପଣ କରାଯାଏ । ଏ ଅଞ୍ଚଳର କୃଷୀ ଯେତେବେଳେ ତା'ର ପ୍ରଥମ ଶସ୍ୟ (ଧାନ) ଉତ୍ପାଦନ କରେ, ସେ ଆନନ୍ଦରେ ବିଭୋର ହୋଇଯାଏ ଏବଂ ତା'ର ପ୍ରଥମ ଅର୍ଘ୍ୟ ନୈବେଦ୍ୟ ଆକାରରେ ଠାକୁରାଣୀଙ୍କ ପାଖରେ ସମର୍ପଣ କରେ । ଏହି ଅବସରରେ ଘରର ପ୍ରତ୍ୟେକ ସଦସ୍ୟଙ୍କ ଉପସ୍ଥିତିରେ ଘରର କୁଳ ଦେବତାଙ୍କୁ ନୂତନ ଶସ୍ୟର ଅନ୍ନଭୋଗ କରାଯାଏ । ଶାଁମାନଙ୍କର ଝାଙ୍କର 'ସମଲାଇଙ୍କ ପୂଜାରୀ) ଦିନକ ଆଗରୁ ପ୍ରତ୍ୟେକ ଯଜମାନଙ୍କରେ କିଛି କିଛି ପାଚିଲା ଧାନ ବଣ୍ଟନ କରିଥାଏ ଏବଂ ତା' ବଦଳରେ ଯଜମାନମାନଙ୍କଠାରୁ କିଛି କିଛି ପାରିଶ୍ରମିକ ପାଇଥାଏ । ଏହି ପାଚିଲା ଧାନରେ ଅନ୍ନଭୋଗ କରାଯାଏ ଏବଂ ଏହା ହିଁ "ନୂଆଖାଇ" ପର୍ବର ବିଶେଷତ୍ୱ ।

"ନୂଆଖାଇ" ଏକ କୃଷି ଭିତ୍ତିକ ପର୍ବ, ଏଥିରେ କୌଣସି ଦ୍ୱି... ନାହିଁ । ଏ ଅଞ୍ଚଳର ଅଧିବାସୀମାନେ ସାଧାରଣତଃ କୃ... ଉପରେ ନିର୍ଭର କରନ୍ତି । ଏପରିକି ଏ ଅଞ୍ଚଳର ବ୍ରାହ୍ମଣମାନଙ୍କ ମଧ୍ୟ ପ୍ରଧାନ ଜୀବିକା କୃଷି । ସମ୍ବଲପୁର, କଳାହାଣ୍ଡି ... ବଲାଙ୍ଗୀର ଅଞ୍ଚଳର ଅନେକ ଗୌଣ୍ଡିଆ ବ୍ରାହ୍ମଣ ଅଛ... ସେମାନଙ୍କର ଶହ ଶହ ଏକର କୃଷ ଜମି ଥିଲା । ସେଥିପା... ସେଥିପାଇଁ ଏ ଅଞ୍ଚଳର ବ୍ରାହ୍ମଣମାନଙ୍କୁ ଆରଣୀକ, ଖାଉଣ୍ଟ, ... ରଘୁନାଥିଆ ଆଦି ଉପାଧିରେ ଭୂଷିତ କରାଯାଏ ।

ନୂଆଖାଇର ବିଶେଷତ୍ୱ ଏହା ଯେ ଏ ଦିନ କୌଣସି ... ବାସନ କିମ୍ବା ଧାତୁ ନିର୍ମିତ ସାମଗ୍ରୀରେ ନୂଆ ଅନ୍ନ ଭୋଗ ... ନାହିଁ କିମ୍ବା ପ୍ରସାଦ ଖିଆ ଯାଏ ନାହିଁ । ଜାତି ନିର୍ବିଶେଷରେ ଖଲିପତ୍ର ଏବଂ ଦନା (ଡଉପଦୀ) ତିଆରି କରାଯାଏ । ... ବ୍ରାହ୍ମଣ ସରସି (ଶାଳପତ୍ର), କୁଳତା ମହୁଲପତ୍ର ... ଆଦି ପତ୍ରର ତିଆରି ଖଲିମାନଙ୍କରେ ନୂଆ ଖାଆନ୍ତି ।

ସକାଳୁ ଉପବାସ ରହି, ଗାଧୋଇ ସାହିଠାକୁରାଣୀଙ୍କ ... କୁଳଦେବ ଦେବୀମାନଙ୍କ ପାଖରେ ଭୋଗ ଲାଗିଲା ପରେ ... ମୁରବୀ ସମସ୍ତଙ୍କୁ ନୂଆ ଚାଉଳର ଭୋଗ ସମର୍ପଣ କରନ୍ତି ... ତାଙ୍କଠାରୁ ବୟସରେ ସାନ ସମସ୍ତେ ତାଙ୍କୁ ଜୁହାର ହୁଅନ୍ତି । ... ପୁରାପୁରି ନିରାମିଷ ଭୋଜନ, ଅପରାହ୍ନରେ ନୂଆଖାଇ ଭେଟ ... ଏବଂ ସମସ୍ତଙ୍କୁ ବୟସ୍କମାନଙ୍କୁ ଜୁହାର ବା ଜୁହାର ଭେଟ ... ଏହା ବାଧ୍ୟତା ମୂଳକ । ତା'ପରେ କେତେକ ଗାଁମାନଙ୍କରେ ... (କବାଡ଼ି) ଖେଳର ଆସର ଜମେ । ଉପରେଳି ... ଖିଆଯାଏ । ରାତି ଭୋଜନରେ କେହି କେହି ଆମିଷ ... କରିଥାନ୍ତି । ମାତ୍ର ତାହା ଏକ ନୂଆ ରୀତି ଓ ଖୁବ୍ ଅଳ୍ପଦିନ ... ତାହାର ପ୍ରଚଳନ ।

ନୂଆଖାଇ କେତେ ପୁରାତନ ତାହା ନିର୍ଣ୍ଣୟ କରିବା କଠି... କିନ୍ତୁ ସାଧାରଣତଃ ଆମେ ଅନୁମାନ କରୁ ଯେ ମଣି... ଯେତେବେଳେ ଜଙ୍ଗଲରେ ବସବାସ କରୁଥିଲା ଏବଂ ... ପ୍ରଥମ କରି ଆରମ୍ଭ କରୁଥିଲା ସେ ସମୟରୁ ଏ ପ୍ରଥା ... ଆସୁଅଛି । କାରଣ ଏ ହିଲ୍ ଇସ୍ପାତର ଧାତବ ଯୁଗରେ ... ଅଞ୍ଚଳର ଅଧିବାସୀମାନେ ଏ ପୁଣ୍ୟ ଦିନରେ ନିଜ ନିଜ ... ଉଦ୍ଭିଜ୍ଜ ପତ୍ରର ବ୍ୟବହାର କରୁଛନ୍ତି । ଏ ପରମ୍ପରା ନିଶ୍ଚିତ ... ପୁରାତନ । ଏ ଅଞ୍ଚଳର ଇତିହାସ ମଧ୍ୟ ବହୁ ପ୍ରାଚୀନ । ... ନୂଆଖିଆ କେବେ ଏବଂ କେଉଁ ଅଞ୍ଚଳରୁ ପ୍ରଥମେ ଆରମ୍ଭ ହେଲା ତାହା ବିସ୍ତାର କରିବା ଏକ ଗବେଷଣାର ବିଷୟ ।

# ଟିର୍ତ୍ତୋଲରେ ବିପ୍ଳବର ଧ୍ୱନି

* ଶ୍ରୀ ଗଣେଶ ପ୍ରସାଦ ପରିଡା

ଶୁଭିଥାଏ ଶୁଭାଯାଉଥାଏ ଇନ୍‌କିଲାବ ଜିନ୍ଦାବାଦ୍ । ବିଶେଷ ଭାବରେ ପିଲାମାନେ ଇନ୍‌କିଲାବ ଜିନ୍ଦାବାଦ୍ ସହିତ ଗାନ୍ଧୀ ମହାତ୍ମା କି ଜୟ – ଜହରଲାଲ୍ ନେହେରୁ କି ଜୟ ଧ୍ୱନି ଦେଇ ରାସ୍ତା, ଗ୍ରାମ ଥରାଇ ଦେଉଥାନ୍ତି । ଖଦଡ଼ ଲୁଗା ଖଣ୍ଡେ ପିନ୍ଧି ଦେହରେ ଧଳା ଚଦର ପକାଇ କେତେକ ସ୍ୱାଧୀନତା ସଂଗ୍ରାମୀ ପିଲାଙ୍କ ସହିତ ସ୍ୱର ମେଳି ଗାଉଥାନ୍ତି ଇନ୍‌କିଲାବ୍ ଜିନ୍ଦାବାଦ୍ । ଅଶୋକ ଚିହ୍ନ ଥିବା ତ୍ରିରଙ୍ଗା ପତାକା ଗ୍ରାମ ମୁଖରେ ଉଡୁଥାଏ ଫର୍ ଫର୍ ହୋଇ ।

ହଠାତ୍ କିଏ ଜଣେ ଆସି କହିଦେଲା, ଲାଲ୍ ପଗଡ଼ିଆ କେତେଜଣ ପଦ୍ମଗଡ଼ ରାସ୍ତା ଉପରେ ଯାଉଛନ୍ତି । ଏତିକି ଶୁଣିଲା ମାତ୍ରେ ସବୁ ଥପ୍‌ଥାପ୍ ହୋଇ ବନ୍ଦ୍ ହୋଇଗଲା । ସତେ ଯେପରି କୋଟାଏ ଡାଆଣୀ କିମ୍ବା ସୈତାନ୍ କଥା ଶୁଣି ଗାଁ ଦାଣ୍ଡରେ ପାଟି କରି ଖେଳୁଥିବା ପିଲାମାନେ ନିରବରେ ଘର ଭିତରକୁ ପଳାଇ ଯାନ୍ତି । କେବଳ ପିଲାମାନେ କାହିଁକି ଗାଁର ବଡ଼ମାନେ ମଧ୍ୟ ଚୁପ୍‌ଚାପ୍ ଘରକୁ ପଳାଇଲେ । ଟିକକ ପୂର୍ବରୁ ଜିନ୍ଦାବାଦ୍ – ଜୟ ନାଦରେ ଫାଟି ପଡୁଥିବା ବଫାପୁର ଗାଁ ଦାଣ୍ଡ ହଠାତ୍ ଲୋକଶୂନ୍ୟ ହୋଇ ପଡ଼ିଲା ।

ସଞ୍ଜ ହେବାକୁ ଅଳ୍ପ ସମୟ ଥାଏ, କିଏ ଜଣେ କହିଦେଲା, ଠାକୁରାଣୀ ହାଟରୁ ବୃନ୍ଦାବନ ନାୟକକୁ ପୋଲିସ୍ ବାନ୍ଧି ନେଇଛି । ସେ ଲୋକମାନଙ୍କୁ ବଡ଼ ପାଟିରେ ଇଂରେଜଙ୍କ ବିରୁଦ୍ଧରେ କହୁଥିଲା । ବଡ଼ ପାଟିରେ ଡାକ ଦେଉଥିଲା ଭାଇମାନେ ସମସ୍ତେ ଏକ ହୁଅ ! ଆମ ଦେଶକୁ ସ୍ୱାଧୀନ କରିବା ପାଇଁ ସମସ୍ତେ ଆଗେଇ ଆସ । ଇଂରେଜ ବଣିଆ ଏ ଦେଶକୁ ଆସିଥିଲା ବେପାର ପାଇଁ । ବେପାର କରୁ କରୁ ସେ ହୋଇଛି ଏ ଦେଶର ସର୍ବେସର୍ବା । ଆମ ଦେଶରୁ କୋଟି କୋଟି ଟଙ୍କା ଲୁଟି ନେଉଛି ଆମ ଉପରେ ବିଭିନ୍ନ କର ଭାର ଲଦି । ଆମ ଘର ପାଖରେ ସମୁଦ୍ର ଥିଲେ ବି ଆମେ ଲୁଣ ମାରି ପାରିବୁ ନାହିଁ । ବ୍ରିଟିଶ୍ ସରକାର ଯେଉଁ ଲୁଣ ଦେବ ତାକୁ ଆମେ ଚଢ଼ା ଦରରେ କିଣି ଖାଇବୁ । ଆମ ଭାରତର ତନ୍ତୀ ବଞ୍ଚିବେ ନାହିଁ, ବଞ୍ଚିବେ ଇଂଲଣ୍ଡରେ ଥିବା ମାଞ୍ଚେଷ୍ଟର । ସେଥିପାଇଁ ଗାନ୍ଧୀ ମହାତ୍ମା ଚରଖାରେ ସୂତା କାଟି ଲୁଗା ବୁଣି ପିନ୍ଧିବା ପାଇଁ ଡାକ ଦେଲେ । ସେହି ଗାନ୍ଧୀ ବର୍ତ୍ତମାନ ଜେଲ୍‌ରେ । ଗତ ଅଗଷ୍ଟ ଆଠ ତାରିଖରେ ଅନୁଷ୍ଠିତ ବମ୍ବେ ସମ୍ମିଳନୀରେ ଦେଶବାସୀଙ୍କ ହାତରେ ଭାରତ ଶାସନ ଭାର ସମର୍ପଣ କରିବାକୁ ଇଂରେଜ ସରକାରଙ୍କଠାରେ ଦାବୀ କଲେ । ତାଙ୍କ ଦାବୀକୁ ସରକାର ଅଗ୍ରାହ୍ୟ କରି ଦେଲେ । ତେଣୁ ଗାନ୍ଧିଜୀଙ୍କୁ ଗଣ ସତ୍ୟାଗ୍ରହ ପରିଚାଳନା କରିବା ପାଇଁ ଦାୟିତ୍ୱ ଦିଆଗଲା । ଗାନ୍ଧୀ ଚାହୁଁଥିଲେ ଭାରତର ବଡ଼ ଲାଟ୍‌ଙ୍କ ସହିତ କଥାବାର୍ତ୍ତା କରିବା ପାଇଁ । ତାଙ୍କୁ ସେ ସୁଯୋଗ ଦେବେ କ'ଣ, ତା' ପରଦିନ ହେଉ ନହେଉଣୁ ଗାନ୍ଧୀଙ୍କ ସହିତ ସମସ୍ତ ନେତାଙ୍କୁ ବନ୍ଦୀ କରି ନେଲେ । ଆମ ଓଡ଼ିଶାର ହରେକୃଷ୍ଣ ମହତାବ ମଧ୍ୟ ବାଦ ଗଲେ ନାହିଁ । ତେଣୁ ଭାଇମାନେ ଉଠ – ଦେଶ ପାଇଁ ଜାତି ପାଇଁ ଆଗେଇ ଆସ । ଏତିକି କହି ସାରିବା ପରେ ଟିର୍ତ୍ତୋଲ ଥାନାର ମୁନ୍‌ସି ବାବୁ ତାକୁ ଆଉ କୁହାଇ ନଦେଇ ବନ୍ଦୀ କଲେ । ସେତେବେଳେ ବୃନ୍ଦାବନ ଆନନ୍ଦରେ ଗାଉଥିଲା, କାହୁଁ ଆଇଲେ ଏ ଦେଶକୁ ବେପାରୀ – ସବୁ ଲୁଟି କରି ନେଲେ ଆମରି ।

କଥାଟି ପହଞ୍ଚିଲା ଗାଁର ମହାଜନ ବାଞ୍ଛାନିଧି ମୁଣ୍ଡିଙ୍କ ପୁଅ ଗୌରହରିଙ୍କ କାନରେ । ସେ ଶୁଣୁ ଶୁଣୁ ବାହାରି ଆସିଲେ ଦାଣ୍ଡକୁ । ଗ୍ରାମର କାହ୍ନୁ ମୁଣ୍ଡି ଆସି କହିଲା, ମୁଁ ଦେଖି ଆସିଲି ପୋଲିସ୍‌ମାନେ ବୃନ୍ଦାବନକୁ ହାତକଡ଼ି ଦେଇ ରାସ୍ତାରେ ଚଲାଇ ଚଲାଇ ଟିର୍ତ୍ତୋଲ ଆଡ଼କୁ ନେଉଛନ୍ତି । ମତେ ଦେଖି କହିଲା, ହେଇ ଦେଖ୍ – ଗାଁରେ ସମସ୍ତଙ୍କୁ କହିଦେବ, ଦେଶ ପାଇଁ, ଜାତି ପାଇଁ ମୁଁ ବନ୍ଦୀ ହୋଇ ଯାଉଛି । ମୁଁ ଚୋରୀ କରି ନାହିଁ କିମ୍ବା ଡକାୟତି କରିନାହିଁ । ତଥାପି ମୋ ହାତରେ ଲୁହାର ବେଢ଼ି ।

ଠିକ୍ ଏତିକି ବେଳେ ଗୋଟାଏ ସିପେହୀ ତାକୁ ଧକ୍କାଟାଏ ମାରିଲା । ବୃନ୍ଦାବନ ଧକ୍କାଟାଏ ଖାଇ ବି ଚୁପ୍ ହେଲା ନାହିଁ । କହିଲା, ଏ ସିପେହୀ ମୋର ଭାଇ । ଇଂରେଜ ଘରେ ଗୋଲାମୀ କରିଥିବାରୁ ମୋତେ ସେ ମାରୁଛି । ଠାକୁରାଣୀ ତାକୁ ଟିକିଏ ବୁଦ୍ଧି ଦିଅନ୍ତୁ । କଥା ଶୁଣି ଗମ୍ଭୀର ହୋଇଗଲେ ଗୌରହରି ମୁଣ୍ଡି । ସେ-ଜଣକୁ ଡାକି କହିଲେ, ନାହାକ ସାହିର ବୈଦ୍ୟନାଥକୁ ଯାଇ କହିବ ମୋତେ ଟିକିଏ ଦେଖା କରିବ ।

ସଙ୍ଗେ ସଙ୍ଗେ ଲୋକଟି ଚାଲିଗଲା ନାହାକ ସାହି ଆଡ଼କୁ । ଅଳ୍ପ ସମୟ ପରେ ବୈଦ୍ୟନାଥ ନାୟକ ସେଠାରେ ପହଞ୍ଚିଲେ । ଦୁହେଁ ଚାଲିଲେ ତାଙ୍କ ବୈଠକଖାନା ଆଡ଼େ । ଗଲାବେଳେ

ବୈଦ୍ୟନାଥ କହିଲେ, ପଦ ବାବୁ କାଲି ଗଲାବେଳେ ଗୋଟିଏ କଥା କହି ଗଲେ । ଗୌରହରି ବାବୁ କହିଲେ, ବୃନ୍ଦାବନ ନାୟକଙ୍କ ବିଷୟରେ ତ ? ମୁଁ ପ୍ରଥମେ ତାଙ୍କ କଥାକୁ ଗୋଟାଏ ଖାମଖିଆଲି ଭାବେ ଗ୍ରହଣ କରିଥିଲି । ମାତ୍ର ବର୍ତ୍ତମାନ ମୁଁ ଭାବୁଛି ତାହା ଏକମାତ୍ର ପନ୍ଥା । ସେଥିପାଇଁ ମୁଁ ତୁମକୁ ଡକାଇଛି । ଅତି ସାହସର ସହିତ ଆମକୁ ସେ ସବୁ କରିବାକୁ ପଡ଼ିବ । ସେଥିପାଇଁ ଯଦି କିଛି ଅର୍ଥ ଦରକାର ପଡ଼େ ତେବେ ମୁଁ ତାହା ଦେଇ ଦେବାକୁ ପ୍ରସ୍ତୁତ ଅଛି ।

ବୈଦ୍ୟନାଥ ବାବୁ କହିଲେ, ପଦ ବାବୁ କହି ଯାଇଛନ୍ତି, ମୁଁ ଯେପରି ପୋଲିସ୍ ହାତରେ ଧରା ନଦିଏ । ସେହିଭଳି ଆପଣ ଆମ ସହିତ ଅଛନ୍ତି, ତାହା ଯେପରି ପୋଲିସ୍ ନଜାଣେ । କାହିଁକି ନା, ଆରେଷ୍ଟ ହୋଇ ଜେଲ୍‌ରେ ରହିବା ଅପେକ୍ଷା ଇଂରେଜଙ୍କ ବିରୁଦ୍ଧରେ ଆନ୍ଦୋଳନ ଚଳାଇବା ହେଉଛି ଆମର ବଡ଼ କାମ । କିଛି ନକରି ବା ପୁରୁଷଙ୍କ ଭଳି ଜେଲ୍ ଯିବାକୁ ସେ ମୋଟେ ପସନ୍ଦ କରନ୍ତି ନାହିଁ । ତେଣୁ ତିର୍ତ୍ତୋଲରେ ଆନ୍ଦୋଳନ ଗ୍ଲୁଲ ରଖିବା ପାଇଁ ଆମକୁ ବହୁ କିଛି କରିବାକୁ ହେବ । ଖାଲି ଜେଲ୍ ଗ୍ଲଲିଗଲେ ହେବ ନାହିଁ ।

ଗୌରହରି ବାବୁ କହିଲେ, ଗିରଫ୍ ହୋଇ ଜେଲ୍ ବରଣ କରିବା କଥା ମୁଁ ଚିନ୍ତା କରି ନାହିଁ । କେବଳ କିଛି କାର୍ଯ୍ୟ କରିବା କଥା ସ୍ଥିର କରିଛି । ଆମେ ଦେଖାଇ ଦେବା କଟକ ସଦ୍‌ଡିଭିଜନ୍‌ରେ ତିର୍ତ୍ତୋଲ ଲୋକେ ସ୍ୱାଧୀନତା ଆନ୍ଦୋଳନରେ ବେଶୀ କାମ କରିଛନ୍ତି । ଦେଖ ସାବଧାନରେ ସବୁ କିଛି କରିବ । ଶୁଣୁଛି ସରକାରଙ୍କ ଗୁପ୍ତଚର ସବୁଆଡ଼େ ଅଛନ୍ତି । ବିଶେଷତଃ ତେନ୍ତୁଳିପଦାର ଜମିଦାର ପୂର୍ଣ୍ଣ ବାବୁଙ୍କ ଘର ପୋଲିସ୍‌ଙ୍କର ଆଡ୍ଡା ହୋଇଛି । ପୂର୍ଣ୍ଣ ବାବୁ ସତ୍ୟାଗ୍ରହୀଙ୍କ କାର୍ଯ୍ୟପନ୍ଥା ଜାଣିବାକୁ ବହୁ ଲୋକ ନିଯୁକ୍ତ କରିଛନ୍ତି । ତେଣୁ ସାବଧାନ ନହେଲେ ସବୁ ଭଣ୍ଡୁର ହୋଇଯିବ । ଖାଲି ସାର ହେବ ଜେଲ୍ ଯିବା । ତରତର ହେଲେ ବୈଦ୍ୟନାଥ ଗ୍ଲଲି ଯିବାକୁ । ସେ କହିଲେ ବର୍ତ୍ତମାନ ସମସ୍ତଙ୍କ ଘରକୁ ଯିବି କାଲି ପାଇଁ ସବୁ ବନ୍ଦୋବସ୍ତ କରିବାକୁ ଏହି ମୁହୂର୍ତ୍ତରେ ଚେଷ୍ଟା ନକଲେ କିଛି ହେବ ନାହିଁ ।

ତିର୍ତ୍ତୋଲ ଥାନାର କଫାପୁର ଗୋଟିଏ ମଫସଲ ଗାଁ । ବର୍ଷା ଦିନରେ ସନ୍ଧ୍ୟା ପରେ ପ୍ରାୟ କେହି ଘରୁ ବାହାରକୁ ବାହାରନ୍ତି ନାହିଁ । ରାତିର ଅନ୍ଧକାରକୁ ଦୂରେଇ ଦେବାକୁ ଲଣ୍ଠଣ ହେଉଛି ମୁଖ୍ୟ ଆଲୁଅ । ଲୋକେ ତାଙ୍କ ଘରେ ଡିବିରି ଜାଳି ଘର କାମ କରନ୍ତି । ଅଧିକାଂଶ ଲୋକଙ୍କର ଦିନ ଥାଉଁ ଥାଉଁ ଗୋଷାଇ ସରିଯାଏ । ତେଣୁ ଶୀଘ୍ର ଖାଇ ଶୋଇ ପଡ଼ନ୍ତି । ତେଣୁ ସଞ୍ଜ ପ୍ରହର ଛାଡ଼ିଦେଲେ ତେଣିକି ଘରର କବାଟ କଞ୍ଚା ଦିଆ ହୋଇଯାଏ । ସେଥିପାଇଁ ବୈଦ୍ୟନାଥ ସଞ୍ଜ ଦିଆହେଉ ନହେଉଣୁ ବୁଲିଲେ ବିଭିନ୍ନ ଲୋକଙ୍କ ଘର ଆଡ଼େ ।

ଗୌରହରି ବାବୁ ତାଙ୍କ ବୈଠକ ଘରେ ଲଣ୍ଠଣଟିଏ ଜାଳି ବସିଥାନ୍ତି । ତାଙ୍କ ମୁଣ୍ଡରେ ବହୁ ଚିନ୍ତା — ମନରେ ବହୁ ପ୍ରଶ୍ନ । ମାତ୍ର ସେ ସବୁ ପ୍ରଶ୍ନଠାରୁ ଦୂରେଇ ନେବାକୁ ତାଙ୍କ ପିତା ବୈଠକ ଘର ଭିତରକୁ ପଶି ଆସିଲେ । ତାଙ୍କୁ ଦେଖି ଗୌରହରି ଛିଡ଼ା ହୋଇଗଲେ । ହଠାତ୍ ତାଙ୍କ ବାପା କହିଲେ, ଦେଖ୍ ପୁଅ ! ଆମେ ହେଉଛୁ ହାଟୁଆ ଜାତି । ଆମ ଜାତି ଭିତରେ ବହୁତ କଟକଣା । ମୁଁ ବେପାରରେ ବ୍ୟସ୍ତ ରହିଲେ ମଧ୍ୟ ଶୁଣିବାକୁ ପାଇଛି ବନ୍ଦମୁଣ୍ଡାର ପଦ ବାବୁ ତୋ ପାଖକୁ ବରାବର ଆସୁଛନ୍ତି । ତାଙ୍କ ସହିତ ନାହାକ ସାହିର ବୈଦ୍ୟନାଥ, ବୃନ୍ଦାବନ ମଧ୍ୟ ରହିଛନ୍ତି । ବେଳେ ବେଳେ ଆମ ଗାଁର କାହ୍ନୁ ବି ଆସେ । ପଦ ବାବୁ ମାହାନ୍ତି ଜାତି । ମାହାନ୍ତି ମହାନଦୀ । ତାଙ୍କୁ କେହି ଜାତିରୁ ବାଛନ୍ଦ କରିବେ ନାହିଁ କିମ୍ବା କାହାରି ହାତ ନାହିଁ ତାଙ୍କ ଉପରେ । ସେହିଭଳି ବୃନ୍ଦାବନ ନାୟକ କେତେଥର ଜେଲ୍ ଗଲାଣି । ଜେଲ୍ ହେଉଛି ତାର ଘର । ସେ ଜ୍ୟୋତିଷ ଘରର ପିଲା ହେଲେ ମଧ୍ୟ ଜାତକ ଦେଖି ଜାଣେ ନାହିଁ । ତିରିଶି ମସିହାରେ ରାଜକୃଷ୍ଣ ବୋଷ ଯେଉଁ ସଭା କଲେ ସେହି ସଭା ହେବ ବୋଲି ଗାଁ ଗାଁ ବୁଲି ଢୁମ୍ପା ଦେଇ ଲୋକଙ୍କୁ ଜଣାଇବାକୁ କେହି ଢୁମ୍ପାବାଲା ମିଳିଲେ ନାହିଁ । ସେ ଭାର ଆପେ ଆପେ ବୃନ୍ଦାବନ ନେଲା । ଗାଁ ଗାଁ ବୁଲି ଢୁମ୍ପା ବାଡ଼େଇ ବୋଷଙ୍କ ସଭା କଥା କହିଲା । ତେଣୁ ତାକୁ ତା ମା' ଘର ଭିତରକୁ ପୂରାଉ ନାହିଁ । ବାଡ଼ିରେ କଦଳୀ ପତ୍ର ଖଣ୍ଡେ ପକାଇ ଭାତ ଗଣ୍ଡେ ଦେଉଛନ୍ତି । ଏଭଳି ଲୋକ ସହିତ ତୋର ମିଶିବା ମୋଟ ଉଚିତ୍ ନୁହେଁ । ପୁଣି ବୈଦ୍ୟନାଥଟା ବଗୁଲିଆଟାଏ । ମାଷ୍ଟର ହୋଇଥିଲା ତାକୁ ବି ଛାଡ଼ିଲା । ଏହିଭଳି ଲୋକେ ତୋ ସହିତ ମିଶି କ'ଣ ସବୁ କଥାବାର୍ତ୍ତା କରୁଥିବା ଶୁଣିଲି । ତେଣୁ ତୋତେ କହୁଛି ତୁ ସାବଧାନରେ ଚଳ । ନାଁ ନହେଲେ ଜାତି ଆମକୁ ଅଟକ କରିବେ । ପ୍ରାୟଶ୍ଚିତ ପାଇଁ ଜାତି ଆଗରେ ପାଣି ଗରା ମୁଣ୍ଡେଇ ଛିଡ଼ା ହେବାକୁ ପଡ଼ିବ । ଏ ସବୁ ଘଟିବାଠାରୁ ଆମ ମରିଯିବା ସମସ୍ତଙ୍କଠାରୁ ଭଲ । ତୁ ଆମ ତିନି ଭାଇଙ୍କର ଗୋଟିଏ ବୋଲି ପୁଅ । ତୋର କିଛି ହେଲେ ଆମେ ତିନିହେଁ ଠକ୍‌ଠାକ୍ ମରିଯିବୁ ।

ତଳକୁ ମୁହଁ କରି ନିରବରେ ଛିଡ଼ା ହୋଇଥାନ୍ତି ଗୌରହରି । ତାଙ୍କ ବାପା ବାଞ୍ଛାନିଧି ପୁଣି କହି ଗ୍ଲଲିଥାନ୍ତି ତାଙ୍କୁ ବହୁ କଥା । ଗୌରହରି ଶୁଣୁଥାନ୍ତି ସବୁ । କିନ୍ତୁ କିଛି ଉତ୍ତର ଦେବା ଅପରାଧ । ବାପା ତାଙ୍କର କହିବେ, 'ମୋ ମୁହଁରେ ଉତ୍ତର ଦେଉଛି' ।

ପିତା ବାଞ୍ଛାନିଧି କହିଲେ, 'ମୁଁ ପିଲାଦିନେ ବୁଢ଼ୀ ମା'ଠାରୁ ଶୁଣିଛି ଆମେ ହେଉଛୁ ସାଧବ । ବୋଇତ ଧରି ଆମ ପୂର୍ବ ପୁରୁଷ ସିଂହଳ, ଜାଭା, ସୁମାତ୍ରା ଯାଉଥିଲେ । ଆସିଲା ବେଳେ ଧନରତ୍ନ ବୋହି ଆଣୁଥିଲେ କେତେ ନାହିଁ କେତେ । କେଉଁ କାଳୁ ବୋଇତ ବାଣିଜ୍ୟ ବନ୍ଦ ହୋଇଗଲାଣି । ହେଲେ ବେପାର ଆମର ବନ୍ଦ ହୋଇ ନାହିଁ । ଏହି ବେପାର ଯୋଗୁ ଆମକୁ ଦଶଖଣ୍ଡି ଗାଁରେ ମିଳିକୁ ଲୋକ ଚିହ୍ନନ୍ତି । ହେଲେ ତୁ ଯଦି ସେମାନଙ୍କ ସହିତ ମିଶିବୁ ତେବେ ଆମର ଇଜତ୍ ମାଟିରେ ମିଶିଯିବ । ସେଥିପାଇଁ ମୁଁ ତୋତେ କହୁଛି ତୁ ଆଉ ସେମାନଙ୍କ ସହିତ ମିଶାମିଶି କରନା । ପୁଣି ଶୁଣିଲି ଠାକୁରାଣୀ ହାଟରେ ବୃନ୍ଦାବନ ସରକାରଙ୍କ ବିରୁଦ୍ଧରେ କହି ବନ୍ଧା ହୋଇ ଥାନାକୁ ଗଲାଣି । ହୁଏତ ପଦ ବାବୁ କାଲି ପୋଲିସ୍‌ଙ୍କ ହାତରେ ବନ୍ଧା ହେବେ । ପୋଲିସ୍ ତାଙ୍କୁ ଧରି ନେଇ ଜେଲ୍ ଦେବା କଥା ନୂଆ ନୁହେଁ । ତେଣୁ ତୁ ସାବଧାନ ରହ । ତୋର ବୋଉ ତୋତେ ନଦେଖିଲେ ପାଗଳି ହୋଇଯିବ । ନାଁ ନହେଲେ ଏଠୁ ତୋତେ ଅନ୍ୟଆଡ଼େ ପଠାଇ ଦେଇଥାନ୍ତି ।



ଭୁବନେଶ୍ୱରଠାରେ ଆୟୋଜିତ ବନ୍ୟା ନିୟନ୍ତ୍ରଣ ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।



ଭାରତୀୟ ବାଣିଜ୍ୟ ଏବଂ ଶିଳ୍ପ ସଙ୍ଘର ଏକ ପ୍ରତିନିଧିଦଳ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ସଚିବାଳୟ ପ୍ରକୋଷ୍ଠରେ ଭେଟି ଆଲୋଚନା କରୁଛନ୍ତି ।



ସୂଚନାଭବନଠାରେ ଅତିବଡ଼ି ଜଗନ୍ନାଥ ଦାସଙ୍କ ଲିଖିତ ଭାଗବତ ଉପରେ ନିର୍ମିତ କ୍ୟାସେଟ୍‌କୁ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ଉନ୍ମୋଚନ କରୁଛନ୍ତି ।




ଭୁବନେଶ୍ୱରଠାରେ ଅନୁଷ୍ଠିତ ପଣ୍ଡିତ ନୀଳକଣ୍ଠ ଦାସଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ସମାରୋହ ଉତ୍ସବରେ ପରିବହନ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଓ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ।



ହରିଜନ କଲ୍ୟାଣ ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ ।



ଜଗତସିଂହପୁର ଜିଲ୍ଲା ସାମ୍ବାଦିକ ସଙ୍ଘର ଜିଲ୍ଲାସ୍ତରୀୟ ଉତ୍ସବକୁ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ଦାମୋଦର ରାଉତ ଉଦ୍‌ଘାଟନ କରୁଛନ୍ତି ।




କଟକ ନଗର ପାଳିକା ଦ୍ବାରା ଆୟୋଜିତ ସ୍ଵାୟତ୍ତ ଶାସନ ଦିବସ ପାଳନ ଉଦ୍‌ଯାପନୀ ଉତ୍ସବରେ
ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ ।



ସୂଚନା ଭବନଠାରେ ଆୟୋଜିତ ଓଡ଼ିଶା ସୂଚନା ସେବା ସଙ୍ଘର ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ଏକ ପତ୍ରିକା ଉନ୍ମୋଚନ କରୁଛନ୍ତି ।



ଓଡ଼ିଶାରେ ସ୍ବାସ୍ଥ୍ୟ ସେବାରେ ଜାପାନୀ ସହାୟତା ବିଷୟରେ ଜାପାନ୍ ସ୍ବାସ୍ଥ୍ୟ ପ୍ରତିନିଧିମାନେ
ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ଭେଟି ଆଲୋଚନା କରୁଛନ୍ତି । ଉକ୍ତ ଆଲୋଚନାରେ
ସ୍ବାସ୍ଥ୍ୟ ମନ୍ତ୍ରୀ ଶ୍ରୀ ମୁସ୍ତାଫିଜ୍ ଅହମଦ୍ ଉପସ୍ଥିତ ଅଛନ୍ତି ।

ଗୌରହରି କହିଲେ, ମୁଁ ସେମାନଙ୍କୁ ନାହିଁ କରି ଦେଇଛି ମୋ ପାଖକୁ ଆସିବା ପାଇଁ । ଆଜି ସଞ୍ଜ ଆଗରୁ ବୈଦ୍ୟନାଥ ଆସିଥିଲା ତାକୁ କହି ଦେଇଛି ସେ ଯେପରି ଏଠାକୁ ନଆସେ । ତେଣୁ ଆପଣ ସେ ବିଷୟରେ କିଛି ଭାବନ୍ତୁ ନାହିଁ ।

ନୈନି ଭାଇରେ ଗୋଟିଏ ବୋଲି ପୁଅ ସେ । ସେ ଯାହା କହେ ତାହା ସତ ବୋଲି ସେ ଧାରଣା କରି ଆସିଛନ୍ତି । ତେଣୁ ଗୌରହରି ବାବୁ କହିଲା ପରେ ବାପା ବାଞ୍ଛାନିଧି ସେଠାରୁ ଗ୍ଲିଗଲେ । ସବୁଦିନ ପରି ତା' ପର ଦିନ ସକାଳ ହେଲା । କୃଷୀମାନେ, ମୂଲିଆମାନେ ସକାଳ ହେଉ ହେଉ ଧାନ କିଆରିରୁ ଘାସ-ବାଲୁଙ୍ଗୀ ବାଛିବାକୁ ବିଲକୁ ଗ୍ଲିଗଲେ । କଟକ-ପାରାଦ୍ୱୀପ ରାସ୍ତା ଆମ ତାଳଦଣ୍ଡା କେନାଲ ମଝିରେ ପଡୁଥାଏ । ତା' ପୂର୍ବକୁ ଧାନ କିଆରି ଲାଗି ଯାଇଛି ଦଣ୍ଡାସାହି କାହିଁକି ତେନ୍ତୁଳିପଦା ପର୍ଯ୍ୟନ୍ତ । ପଟ୍ଟଗଣ୍ଡରେ ପାଣି ଜ୍ୟେଷ୍ଠ ମାସରେ ମଧ୍ୟ ଅଥଳ ଥଳ ଥାଏ । ସେତେବେଳେ ଗ୍ଲିଥାଏ ଭାଦ୍ରବ ମାସ । କଥାରେ ଅଛି ଜନ୍ମକୁ ଶୋଇଲେ କର୍ମକୁ ଘନେ । ଜନ୍ମାଷ୍ଟମୀ ଗ୍ଲିଗଲାଣି ଅନେକ ଦିନରୁ । ଧାନ କିଆରିରେ କୃଷୀମାନେ ମୂଲିଆଙ୍କୁ ନେଇ ଘାସ ବାଲୁଙ୍ଗୀ ବଛାଉ ଥାନ୍ତି । ରାସ୍ତାରେ ଗ୍ଲି ଯାଉଥିବା ସାଧାରଣ ଲୋକ କାବା ହୋଇ ଯାଉଥାନ୍ତି ଧାନ କିଆରିକୁ ଅନାଇ । ପୋଖରୀରେ କଇଁଫୁଲ ଫୁଟିଲାଭଳି ଧାନ କିଆରିରେ ଲୋକ । ଆକାଶରେ ମେଘ ସେଭଳି ନ ଥିଲେ ମଧ୍ୟ କେତେଜଣ ଛତା ଖୋଲି ରାସ୍ତା ଉପରେ ଛିଡ଼ା । ଧାରା ଶ୍ରାବଣ ଗ୍ଲି ଯାଇଥାଏ । ଭାଦ୍ରଅ ମାସର ଖରା ଦେହକୁ ଟାଏଁ ଟାଏଁ ମାରେ । ସେଥିପାଇଁ ଲୋକେ ଛତା ଖୋଲି ଛିଡ଼ା ହୋଇଥାନ୍ତି ବୋଧେ ।

କିନ୍ତୁ ପ୍ରାୟ ନଅଟା ଦଶଟା ହେବ । ଦଣ୍ଡାସାହି ଗଡ଼ା ଆରପଟରେ କେତୋଟି ନାଲିଟୋପି ଦେଖାଗଲା । ରାସ୍ତା ଉପରେ ଛିଡ଼ା ହୋଇଥିବା ଛତାଧାରୀଙ୍କ ଭିତରୁ କିଏ ଜଣେ କହିଲେ ହେଇ ଆସିଗଲେ । ଧାନ କିଆରିରେ ବାଲୁଙ୍ଗୀ ବାଛୁଥିବା ଲୋକମାନେ ତାଙ୍କ ମଧ୍ୟରେ କ'ଣ ଟୁପୁରୁ ଟାପୁର କଥାବାର୍ତ୍ତା ହେଲେ । କେତେକ ମଧ୍ୟ ପୂର୍ବ ଦିଗକୁ ଅନାଇଲେ । ମାତ୍ର କେଇ ମିନିଟ ମଧ୍ୟରେ ପୂର୍ବରୁ ତିର୍ତ୍ତୋଲ ଥାନାଆଡୁ ଆସୁଥିବା କେତେଜଣ ପୋଲିସ ସିପାହୀ ଆଉ ନୀଳ ପୋଷାକ ପିନ୍ଧା ଚୌକିଦାର ସଟ ଦେଖାଗଲେ । ସେମାନଙ୍କ ମଝିରେ ଗ୍ଲିଥାନ୍ତି ସତ୍ୟାଗ୍ରହୀ ବୃନ୍ଦାବନ ନାୟକ । ତାଙ୍କ ଦୁଇ ହାତରେ ବେଡ଼ି ପଡ଼ିଥାଏ ।

ଆଉ ଟିକିଏ ପରେ ଲୋକମାନଙ୍କର ପାଖାପାଖି ହୋଇଗଲେ ସେମାନେ । ହଠାତ୍ ବୃନ୍ଦାବନ ନାୟକ ବେଡ଼ି ପଡ଼ିଥିବା ହାତ ଦୁଇଟିକୁ ଉପରକୁ ଟେକି ବଡ଼ ପାଟିରେ କହି ଉଠିଲେ, ଭାଇମାନେ ମୁଁ ଚୋରୀ କରିନାହିଁ କି ନାରୀ କରିନାହିଁ । କାଲି ଶାରଳା ଠାକୁରାଣୀଙ୍କ ହାଟରେ ଇଂରେଜଙ୍କୁ ହଟାଇ ଆମ ଦେଶକୁ ସ୍ୱାଧୀନ କରିବାକୁ କହୁଥିଲା ବେଳେ ପୋଲିସ୍ ମୋତେ ବନ୍ଦୀ କଲେ । ଏ ପୋଲିସ୍‌ମାନେ ଆମର ଭାଇ । କିନ୍ତୁ ପୋଲିସ୍ ପୋଷାକ ସେମାନେ ପିନ୍ଧିଥିବାରୁ, ସେମାନଙ୍କୁ ଗୋଲାମୀ ଭୂତ ଗ୍ରାସ କରିଛି । ମୁଁ ଜଣେ ଗରିବ ଲୋକ, ଗରିବ' ହେଲେବି ଧନ ପାଇଁ ନଧାଇଁ ଧାଇଁଛି ଦେଶର ସ୍ୱାଧୀନତା ପାଇଁ । ଖବର କାଗଜରୁ ଆପଣମାନେ ଜାଣିଥିବେ ଜାତୀୟ ସ୍ତରର ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ବନ୍ଦୀ କରି ଜେଲ୍‌ଖାନା ନେଇ ଗଲେଣି । ଆମ ଓଡ଼ିଶାର ହରେକୃଷ୍ଣ ମହତାବ ମଧ୍ୟ ଜେଲ୍‌ରେ । ଆପଣମାନେ ଏମାନଙ୍କୁ ପଚ୍ଚାରନ୍ତୁ ଦେଶକୁ ସ୍ୱାଧୀନ କରିବାକୁ ଧାଉଁଥିବା ଗୋଟିଏ ଲୋକକୁ କାହିଁକି ବାନ୍ଧି ନେଉଛନ୍ତି ?

ଏକାବେଳକେ ଅନେକ ଲୋକଙ୍କ କଣ୍ଠରୁ ଶୁଣାଗଲା, ହଇହେ ତୁମେ ବୃନ୍ଦାବନ ନାୟକଙ୍କୁ ବାନ୍ଧିଛ କାହିଁକି ? ସେ ଚୋରି କରିନାହିଁ କିମ୍ବା ଡକାୟତି କରିନାହିଁ । ଦେଶକୁ ସ୍ୱାଧୀନ କରିବାକୁ କହିବା କ'ଣ ତା'ର ଅପରାଧ ? ଛାଡ଼ି ଦିଅ – ନ ହେଲେ ତୁମ ଅବସ୍ଥା ସାଂଘାତିକ ହୋଇଯିବ ।

ଜଣେ ସିପାହୀ ତା'ର ବେତଟିକୁ ଦେଖାଇ ମାଡ଼ି ଆସିଲା । କହିଲା ଆରେ ଏ କ'ଣ ଡେଙ୍କିରୁ କାଠ ଭାବିଲେଣି କି ? ଖବରଦାର ! ଟିକିଏ ଆଗକୁ ଆସିଲେ ବୃନ୍ଦାବନ ଭଳି ତୁମେ ସମସ୍ତେ ବନ୍ଦୀ ହେବ । ଯେଉଁ ଇଂରେଜଙ୍କ ଶାସନରେ ସୂର୍ଯ୍ୟାସ୍ତ ନାହିଁ । ତାଙ୍କୁ କୁଆଡ଼େ ଏ କେଇଟା ଲଫଙ୍ଗା ଏ ଦେଶରୁ ତଡ଼ିଦେବେ । ଖାଲି ତୁମର ଆମଠାରୁ ମାଡ଼ ଖାଇବା, ଜେଲ୍ ଯିବା ସାର ହେବ ସିନା ଆଉ କିଛି ହେବ ନାହିଁ । ଆମେ କହୁଛୁ ବୃନ୍ଦାବନ ନାୟକ ରାଜବନ୍ଦୀ । ତାଙ୍କୁ ଆମେ ଗିରଫକରି କଟକ ନେଉଛୁ । ଆମ କାର୍ଯ୍ୟରେ ବାଧା ସୃଷ୍ଟି କଲେ ଏଇ ବେତରେ ତୁମ ପିଠି ଫଟେଇ ଦେବୁ ।

ଆଗକୁ ଆସେଇ ଆସେଇ ଆସିଲେ ପଗିଡ଼ ପାଟଣାର କାଲୁ ସାହୁ । ତାଙ୍କ ପଛକୁ କାହ୍ନୁ ପୁଷ୍ଟି, ପଗି ସେଠୀ ଆଦି ମଧ୍ୟ ପାଟିକରି କହିଲେ, ଆରେ ଏ କନେଇ ସେଠୀ ବଳଦର ତ କମ୍ ବହପ ନୁହେଁ । ସେ କ'ଣ କହିଛି ନା, ଆମକୁ ବେତରେ ବାଡ଼େଇବ । ଆଛା, କେମିତି ବାଡ଼େଇବ ଦେଖିବା । ଭାଇମାନେ ପ୍ରସ୍ତୁତ ହୋଇଯାଅ, ଏ ଗୋଲାମମାନଙ୍କୁ ମୁକାବିଲା କରିବାକୁ । ସଙ୍ଗେ ସଙ୍ଗେ ଘେରିଗଲେ ଦୁଇଜଣ ସିପେହୀ ଓ ଚ୍ଚାରିଜଣ ଚୌକିଦାରଙ୍କୁ । ଲୋକମାନଙ୍କ ଆଗେଇ ଆସିବା ଦେଖି ବିଚରା ଦଫାଦାର ଦୂରକୁ ଘୁଞ୍ଚି ପଳାଇଲା । ଦୂରରୁ ବୈଦନାଥ ବାବୁ ପାଟିକରି କହିଲେ ଯାହା ହୁଅନ୍ତୁ ନା କାହିଁକି ଏମାନେ ଆମର ଭାଇ । ଏମାନଙ୍କୁ ମାର ନାହିଁ । କେବଳ ତାଙ୍କର ଗୋଲାମୀ ପୋଷାକକୁ ଦେହରୁ କାଢ଼ି ପୋଡ଼ି ଦିଅ । ସେମାନେ ଥାନାକୁ ଫେରିଯାଇ ମୁନ୍‌ସି ବାବୁ, ଦାରୋଗା ବାବୁଙ୍କୁ ସମ୍ବାଦ ଦିଅନ୍ତୁ ଆମେ ରାଜବନ୍ଦୀଙ୍କୁ ଛଡ଼ାଇ ନେଉଛୁ, ଆଉ ପୋଲିସ୍‌ଙ୍କର ଗୋଲାମୀ ପୋଷାକ ପୋଡ଼ି ଦେଉଛୁ । ତାଙ୍କର ଯଦି ଶକ୍ତି ସାହାସ ଥାଏ ତେବେ ବିପ୍ଳବୀମାନଙ୍କ ପାଖକୁ ଆସନ୍ତୁ । ନ ହେଲେ ସେମାନେ ଆମ ସହିତ ଯୋଗ ଦିଅନ୍ତୁ ।

ସଙ୍ଗେ ସଙ୍ଗେ ଲୋକମାନେ ଧରି ପକାଇଲେ ଚୌକିଦାର ଓ ସିପାହୀଙ୍କୁ । ଜଣେ ସିପାହୀ ହଠାତ୍ ଲୋକଙ୍କୁ ଠେଲି ଡେଇଁ ପଡ଼ିଲା ତାଳଦଣ୍ଡା କେନାଲ ଭିତରକୁ । ଡେଇଁ ପଡ଼ିଲାବେଳେ ଜଣେ ଲୋକ ତା ମୁଣ୍ଡ ମିଶା ଲାଲ ପଗିଡ଼ିକୁ ଧରି ପକାଇଲା । କେବଳ ସିପାହୀ ଚହଟୋ ସହିତ ମୁଣ୍ଡଟିକୁ ଖସେଇ ନେଲା । କେବଳ ସିପାହୀଟି ନାଲ ଟୋପିଟି ରହିଗଲା ସେହି ଲୋକ ହାତରେ । ସିପାହୀଟି ନାଲ ପହଁରି କେନାଲର ଉତ୍ତର ପଟ ବନ୍ଧ ପାଖରେ ପହଞ୍ଚିଲା ।

କେତେଜଣ ନାଳ ପହଁରି ତାକୁ ଧରି ଆଣିବାକୁ ଇଚ୍ଛା କଲେ। ବୈଦ୍ୟନାଥ କହିଲେ ନା, ନା, ତା ପଛରେ ଯାଇ ଲାଭନାହିଁ, ସେ ଭୀରୁ କାପୁରୁଷ ତାକୁ ଧରି ଆମର ଲାଭ କ'ଣ ?

ଚୌକିଦାରଙ୍କ ଠାରୁ ଓହ୍ଲାଇ ନିଆଗଲା ତାଙ୍କ ନୀଳ କୁର୍ତ୍ତା ଆଉ ଟୋପି। ସିପାହୀଙ୍କ ଠାରୁ ଲାଲ ଟୋପି ଓ ଖାକି କୁର୍ତ୍ତା ଓହ୍ଲାଇ ଦିଆଗଲା। ଏତିକିବେଳେ ଜଣେ କିରାସିନି ଟିଣ ଓ ଡିଆସିଲି ଧରି ପହଞ୍ଚିଲା। କିରାସିନି ତେଲ ଢାଳି ପୋଡି ଦିଆଗଲା ସେମାନଙ୍କ ପୋଷାକ। କେତେଖଣ୍ଡ କୁର୍ତ୍ତା କିରାସିନି ତେଲରେ ଭିଜି ଜଳି ଉଠିଲା ହୁ ହୁ ହୋଇ। ଦିନ ହେଲେ ବି ସେ ନିଆଁ କୁଜଙ୍ଗଠାରୁ କଟକ ପଡିଥିବା ରାସ୍ତାକୁ ବେଶ୍ ଦେଖାଯାଉଥିଲା। ରାସ୍ତା ଉପରେ ଛିଡା ହୋଇଥିଲେ ଗୌରହରୀ ମୁନ୍ତି। ସେ ଉଦ୍‌ବେଳିତ ହୋଇ ପଡିଲେ ସେହି ଦୃଶ୍ୟ ଦେଖି। ସେ ସ୍କୁଲ ନଥିଲେ ତିଷ୍ଠା ପଡିବା ପାଇଁ। କାଳେ ତାଙ୍କ ବାପା ବାଞ୍ଛାନିଧି ଜାଣି ପାରିବେ ସେଥିପାଇଁ ସେ ପଦ୍ମଗଣ୍ଡ ପାଖରେ ଛିଡାହୋଇ ଦୃଶ୍ୟଟିକୁ ଉପଭୋଗ କରୁଥିଲେ। ମାତ୍ର ଶେଷରେ ସେ ସମ୍ଭାଳି ପାରିଲେ ନାହିଁ। ଠୋ ଠୋ ତାଳିମାରି ରାସ୍ତା ଉପରେ କେଇ ଝାପ ଡେଇଁ ଉଠିଲେ।

ଗୋଟାଏ ଗଡ଼ ଜିଣିଲା ଭଳି ଆନନ୍ଦ ବିହ୍ୱଳ ହୋଇ ପଡିଲେ ଲୋକମାନେ। ସେମାନେ ଭୁଲିଗଲେ ଏହାପରେ କ'ଣ ଅଘଟଣ ଘଟିବ କଥାକୁ। ପରିଡ଼ ପାଟଣାର ନବେଇ ସାହୁ କହିଲେ, ଚାଲ ଯିବା ତିର୍ତ୍ତୋଲ ଥାନାକୁ। ଥାନା ବାବୁଙ୍କୁ ପଚାରିବା ତୁମେ ଆମ ସହିତ ଯୋଗ ଦେବ ନା ତୁମ ପୋଷାକ ପୋଡ଼ା ହେବ।

ହେଁ ହେଁ ହସି ଉଠିଲେ ସମସ୍ତେ। ନବେଇ ସାହୁ ବି ତାଙ୍କ ସହିତ ହସି ଉଠିଲେ। ବୈଦ୍ୟନାଥ କହିଲେ, ହଁ ହଁ ଆମେ ଏତିକି ନୋହୁଁ, ରଘୀପୁର, ନାଡଗିରା, ମାଣତିରୁ, ତରଜ ଆଦିର ଲୋକମାନଙ୍କୁ ଧରି ଆମେ ଯିବା। ଆବଶ୍ୟକ ହେଲେ ଥାନାକୁ ପୋଡି ଦେବା। ତା ପୂର୍ବରୁ ଆହୁରି କେତେକ କାମ ଅଛି।

ବୃନ୍ଦାବନ ନାୟକଙ୍କ ହାତରୁ ବେଡ଼ି ଖୋଲା ସରିଥାଏ। ତାଙ୍କୁ ପୋଲିସ୍ ହାତରୁ ଛଡ଼ାଇ ନେବାକୁ ଏତେ ଲୋକ ଆସିଛନ୍ତି ଦେଖି ବିହ୍ୱଳ ହୋଇ ପଡୁଥିଲେ। ହଠାତ୍ ସେ କହି ଉଠିଲେ 'ବନ୍ଦେ'....... ବୈଦ୍ୟନାଥ ଧୁଆ ଧରିଲେ 'ମାତରମ୍'। ତା' ପରେ ସମସ୍ତେ ଏକ ସ୍ୱରରେ ଗାଇ ଉଠିଲେ, 'ବନ୍ଦେ ମାତରମ୍', 'ଭାରତ୍ ମାତା କି ଜୟ' ଧ୍ୱନି ବୃନ୍ଦାବନ ଦେଲେ। ତା' ପରେ ଚାଲିଲା ଗାନ୍ଧୀ ମହାତ୍ମା, ଜହରଲାଲଙ୍କ ଜୟ ଧ୍ୱନି।

ବିଜୟ ଉଲ୍ଲାସରେ ମାତି ଉଠିଲେ ସ୍ୱାଧୀନତା ବିପ୍ଳବୀମାନେ। ଯେଉଁ ସିପେହୀ ଜଣକ ବିପ୍ଳବୀଙ୍କ କବଳରେ ରହିଯାଇଥିଲେ ତାଙ୍କୁ ଗାଁକୁ ଗାଁ ବୁଲାଇ ତା' ମୁହଁରେ ଭାରତ୍ ମାତା କି ଜୟ – ମହାତ୍ମା ଗାନ୍ଧୀ – ଜହରଲାଲ ନେହୁରୁ କି ଜୟ ବାରମ୍ବାର କୁହାଉଥିଲେ। ଇଂରେଜ ସରକାରଙ୍କ ଗୋଲାମ ସେହି ସିପେହୀ ଜଣକ ଜୟ ଧ୍ୱନି ସହିତ ଶତ କଣ୍ଠରୁ ଶୁଭା ଯାଉଥିଲା ଜୟ ଜୟକାର ସ୍ୱର। ଗାଁ ଦାଣ୍ଡରୁ ସେହି ସ୍ୱର ଶୁଣିଲା ମାତ୍ରେ ଲଳନାମାନେ ବାହାରି ଆସୁଥିଲେ ଦାଣ୍ଡକୁ। ସେମାନଙ୍କ ମୁଖରୁ ଭାସି ଉଠୁଥିଲା ହୁଳହୁଳି ଶବ୍ଦ।

ଛୋଟ ଛୋଟ ପିଲାମାନେ ମଧ୍ୟ ଭାରତ୍ ମାତା କି ଜୟ ଧ୍ୱନି ଦେଲେ। ମନେ ହେଉଥିଲା ଇଂରେଜ ବଣିଆଙ୍କ କବଳରୁ ଭାରତକୁ ମୁକ୍ତ କରିବା ପାଇଁ ସତେ ଯେପରି ତେରତାଙ୍ଗ, ... ତରଜଙ୍ଗୀ, କୋଟକଣା ଆଦି କେତେଖଣ୍ଡ ଗ୍ରାମର ଆବାଳ ବୃଦ୍ଧ ବନିତା ଏକ ହୋଇ ଯାଇଛନ୍ତି। ଦେଶର ନେତା ଗାନ୍ଧିଜୀଙ୍କ ... ଥିବା ମର ଡାକ ଏହି କେତେଖଣ୍ଡ ଗ୍ରାମର ଲୋକମାନଙ୍କ ଦେହରେ ଅଗ୍ନି ସଂଯୋଗ କରିଛି।

ବେଳକୁ ବେଳ ସେମାନଙ୍କ ସଂଖ୍ୟା ବଢ଼ି ଚାଲିଥାଏ। ... ପତାକା କେତେଖଣ୍ଡ ଗ୍ରାମରେ ଫର ଫର ହୋଇ ଉଡୁଥାଏ। ରାଜବନ୍ଦୀଙ୍କୁ ଛଡ଼ାଇ ନେଇଛନ୍ତି, ଜଣେ ପୋଲିସ୍ ସିପେହୀଙ୍କୁ ... ଗାଁ ବୁଲାଇ ଭାରତ ମାତା ଓ ଗାନ୍ଧୀ – ଜହରଲାଲଙ୍କ ଜୟ ଧ୍ୱନି ... ମୁହଁ ବାରମ୍ବାର ଦେଉଥିବା କଥା କଣ୍ଠରୁ କଣ୍ଠ ଗ୍ରାମରୁ ଗ୍ରାମ ବ୍ୟାପି ଚାଲିଲା। ବିଭିନ୍ନ ଗ୍ରାମର ଲୋକମାନେ ଏ କଥା ଶୁଣି ବିହ୍ୱଳ ... ଉଦ୍‌ବେଳିତ ହୋଇ ପଡ଼ିଲେ।

ତିର୍ତ୍ତୋଲର ନେତା ପଦ୍ମଚରଣଙ୍କ କାନକୁ ଏ କଥା ଗଲା। ଶୁଣି ଶୁଣୁ ସେ ଛୁଟି ଆସିଲେ ତେରତାଙ୍ଗ। ବୈଦ୍ୟନାଥ, ବୃନ୍ଦାବନ, କାହ୍ନୁ ମୁନ୍ତି ଆଦିଙ୍କ ସହିତ ଗୌରହରି ମୁନ୍ତିଙ୍କ ପାଖକୁ ଗଲେ। ସମସ୍ତେ ତାଙ୍କ ବାହାର ଘରେ ବସି ଆଲୋଚନା କଲେ, ଏହା ପରେ କ'ଣ କରାଯିବ ? ଶେଷରେ ସ୍ଥିର ହେଲା ତିର୍ତ୍ତୋଲ ଥାନାକୁ ... କରିଦେବା ପାଇଁ। ତାହାହେଲେ ପ୍ରଥମେ ଟେଲିଗ୍ରାଫ୍ ତାରକୁ କାଟି ଦେବା ଦରକାର। ତିର୍ତ୍ତୋଲ ସହିତ କଟକ ଓ ଜଗତସିଂହପୁରର ସମ୍ପର୍କର ତତ୍‌କ୍ଷଣାତ୍ ଏକମାତ୍ର ସୂତ୍ର ଟେଲିଗ୍ରାଫ୍ ତାର।

ସଞ୍ଜ ବୁଡୁ ନବୁଡୁଣୁ ପଦ୍ମଗଣ୍ଡ ପାଖରେ ଟେଲିଗ୍ରାଫ୍ ତାର କଟା ହେଲା। ଏହା ବିପ୍ଳବୀମାନଙ୍କର ଆଉ ଗୋଟିଏ ବିଜୟ। ବିଜୟ ଉଲ୍ଲାସ ସେମାନଙ୍କୁ ଏଡ଼ଳି ଉଦ୍‌ବୋଧିତ କଲା ଯେ ରାତିର ଅନ୍ଧକାର ତାଙ୍କ ପାଖରେ ଅନ୍ଧାର ଭଳି ଦେଖାଗଲା ନାହିଁ। ସେମାନେ ମାଡ଼ି ଚାଲିଲେ କଟକ ଆଡ଼କୁ ନୁଆପଡ଼ା ପର୍ଯ୍ୟନ୍ତ। ନୁଆପଡ଼ାରେ ସରକାରଙ୍କର ଗୋଟିଏ ଜଳ କର ଅଫିସ୍ ଥାଏ। ବିପ୍ଳବୀମାନେ ନିଆଁ ଲଗାଇ ଦେଲେ ସେହି ଜଳ କର ଅଫିସ୍‌ରେ। ... ଚାଳଘର। ହୁ ହୁ ହୋଇ ଜଳି ଉଠିଲା ସେହି ଘର। ... ଘରେ ଥିବା ସରକାରୀ ଖାତା, ବହି, କାଗଜ ମଧ୍ୟ ଜଳି ପାଉଁଶ ହୋଇଗଲା।

ଓଡ଼ିଶାରେ ଅଗଷ୍ଟ ମାସ ହେଉଛି ବର୍ଷାର ମାସ। ବର୍ଷା ଦିନେ ଘର ପୋଡ଼ିଯିବା କ୍ୱଚିତ୍ ଦେଖାଯାଏ। ନୁଆପଡ଼ା ଜଳ କର ଅଫିସ୍ ଘର ବଡ଼ ନୁହେଁ। ତଥାପି ତା'ର ନିଆଁ ବହୁ ଦୂରରୁ ଦେଖାଯାଉଥାଏ। ବହୁ ଲୋକ ମଧ୍ୟ ଧାଇଁ ଆସିଲେ ନିଆଁ ଲିଭାଇବାକୁ। ନିକଟରେ ଥାଏ ପାଣି। ଲୋକମାନେ ... କରି ଧାଇଁ ଆସିଲା ବେଳକୁ ବିପ୍ଳବୀମାନେ ଧ୍ୱନି ଦେଲେ, ଭାରତ ମାତା କି ଜୟ – ମହାତ୍ମା ଗାନ୍ଧୀ କି ଜୟ।

ଏଥର ଲୋକମାନେ ବୁଝିଲେ, ଏହା ଦୁର୍ଘଟଣା ନୁହେଁ – ସ୍ୱାଧୀନତା ସଂଗ୍ରାମୀମାନେ ନୁଆପଡ଼ା କୋଠିରେ ନିଆଁ ଲଗାଇ ଦେଇଛନ୍ତି। ସେମାନଙ୍କ ମଧ୍ୟରୁ କେତେକ ମଧ୍ୟ ...

ସହିତ ସ୍ୱର ମିଶାଇ ଗାଇ ଉଠିଲେ ଭାରତ୍ ମାତା କି ଜୟ। ହୁ ହୁ ହୋଇ ଜଳୁଥିଲା ଇଂରେଜ ସରକାରଙ୍କ ନୂଆପଡ଼ା ଜଳ କର ଅଫିସ୍। ଘର ଜଳି ଜଳି ପୁଳାଏ ଲେଖା ନିଆଁ ଖଣ୍ଡ ଛିଡ଼ି ପଡୁଥାଏ ଅଫିସ୍ ଘର ଭିତରକୁ। ସେହି ନିଆଁରେ ଘର ଭିତରେ ଥିବା କାଗଜପତ୍ର ମଧ୍ୟ ଜଳୁଥାଏ।

କିଛି ସମୟ ପରେ ବିପ୍ଳବୀମାନେ ଫେରି ଚାଲିଲେ ରାତିଟା ବିଶ୍ରାମ ପାଇଁ। ପୁଣି କାଲି ସକାଳୁ ଆରମ୍ଭ ହେବ ସେମାନଙ୍କର ଇଂରେଜ ବିରୋଧୀ କାର୍ଯ୍ୟ। ପରସ୍ପରକୁ କହୁଥାନ୍ତି, ଦେଖ ଗୋଟାଏ ବେପାରୀ ଜାତି ସାତ ସମୁଦ୍ର ତେର ନଈ ପାରି ହୋଇ ଭାରତକୁ ବେପାର କରିବାକୁ ଆସି ଏ ଦେଶର ଶାସକ ହେଲେ। ଇଂରେଜୀ ଭାଷା ତାଙ୍କରି ସଂସ୍କୃତି ଲଦି ଦେଲେ ବେଦ, ରାମାୟଣ, ମହାଭାରତର ଜାତି ଉପରେ। କେତେଟା ବର୍ଷ ଭିତରେ ଏଡେ ବଡ଼ ସଂସ୍କୃତି ସମ୍ପନ୍ନ ଜାତି ତାଙ୍କର ବଶମ୍ବଦ ହୋଇଗଲା। ଆଜିଠାରୁ ସମସ୍ତେ ପ୍ରତିଜ୍ଞା କର ଏ ଦେଶରୁ ବିଦେଶୀ ସରକାରକୁ ତଡ଼ିବା ପାଇଁ ଶେଷ ରକ୍ତ ବିନ୍ଦୁ ଥିବା ପର୍ଯ୍ୟନ୍ତ ଲଢ଼େଇ କରିବୁ। ଶେଷରେ ସମସ୍ତେ ଉଚ୍ଚ ସ୍ୱରରେ କହି ଉଠିଲେ, ଭାରତ୍ ମାତା କି ଜୟ। ସେତେବେଳେ ରାତିର ଅନ୍ଧକାର ଗଭୀରରୁ ଗଭୀର ହୋଇ ଆସୁଥାଏ। ନୂଆପଡ଼ା ଜଳ କର ଅଫିସ୍ ଘର ପୋଡ଼ିଯାଇ ତା'ର ଶିଖା ଆକାଶରେ ଅଳ୍ପ କିଛି ଦେଖାଯାଉଥାଏ।

(ଘଟଣା ପଟଳ ଉପରେ ଏହି ଗଳ୍ପଟି ଲେଖା ଯାଇଛି। ଐତିହାସିକ ଡଃ ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସରେ ଉଲ୍ଲେଖ କରିଛନ୍ତି ୨୮/୮/୧୯୪୨ରେ। ତିର୍ତ୍ତୋଲଠାରେ ଗ୍ରେପ୍ତାର ହୋଇଥିବା ଲୋକଙ୍କୁ ପ୍ରାୟ ୨୦୦ ପର୍ଯ୍ୟନ୍ତ ଲୋକ ଖଲାସ କରି ନେଇଯାଇଥିଲେ। ....ସେପ୍ଟେମ୍ବର ୩ ତାରିଖ ଦିନ ତିର୍ତ୍ତୋଲ ଥାନାର ନୂଆପଡ଼ାରେ ରେଭିନ୍ୟୁ ଅଫିସ୍ ପୋଡ଼ି ଦିଆଗଲା ଓ ଜଗନ୍ନାଥପୁରଠାରେ ପି: ଡବ୍ଲ୍ୟୁ: ଡି: ବିଶ୍ରାମ ଘର ମଧ୍ୟ ପୋଡ଼ି ଦିଆଗଲା। ମାତ୍ର ସ୍ୱାଧୀନତା ସଂଗ୍ରାମୀ ଗୌରହରି ପ୍ରୁଷ୍ଟି କହନ୍ତି ଏହି ଘଟଣା ୩୧/୮/୧୯୪୨ରେ ଘଟିଥିଲା। ଏହି ବିପ୍ଳବୀମାନେ ଜଗନ୍ନାଥପୁର ଡାକବଙ୍ଗଳା ପୋଡ଼ିଦେଲା ବେଳେ ସେହି ବଙ୍ଗଳାରେ ଜାତୀୟ କବି ବୀରକିଶୋର ଥିଲେ। ସେହି ବିପ୍ଳବୀମାନଙ୍କୁ ନିଜର ଖଦଡ଼ ଲୁଗା ଦେଖାଇ ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ବୋଲି କହି ତାଙ୍କୁ ଉଦ୍‌ବୋଧନ କରିଥିଲେ। ବୀର ବାବୁ ନିଜର ପରିଚୟ ନଦେଇଥିଲେ ଅନ୍ୟଥା ଜନତା ତାଙ୍କୁ ଇଂରେଜ ସରକାରଙ୍କ ଲୋକ ବୋଲି ସେହି ନିଆଁରେ ପୋଡ଼ି ଦେଇଥାନ୍ତେ। ସେତେବେଳେ କଟକ-ପାରାଦ୍ୱୀପ ରାସ୍ତା ମାଟି ରାସ୍ତା ଥିଲା। ବୀର ବାବୁ ତାଁ ପରଦିନ ଶରତ୍ ଗାଡ଼ିରେ କଟକ ଆସୁଥିଲେ। ରାଜନଗର ରୋଡ଼ ଜେଟ୍ଟିଠାରେ ଶୁଣିଲେ ପୋଲିସ୍ ବିପ୍ଳବୀମାନଙ୍କୁ ଖୋଜି ଆରେଷ୍ଟ କରୁଛି। ଟି: ଆର: ଡି: ତାଙ୍କ ଯିବା ଖବର ପୋଲିସ୍‌କୁ ଦେବାରୁ ସେ ସେହି ଦିନ ବନ୍ଦୀ ହେଲେ।)

କ୍ୱାଟର ନଂ-୭୭, ଟାଇପ୍-୪,
ଡେଲ୍ଟା କଲୋନୀ, ଭୁବନେଶ୍ୱର-୧୭।



ସୂଚନାଭବନଠାରେ ରାଜ୍ୟସ୍ତରୀୟ ସଦ୍‌ଭାବନା ଦିବସ ପାଳନ ଅବସରରେ ବିଧାନସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ସଦ୍‌ଭାବନା ଶପଥ ପାଠ କରାଉଛନ୍ତି। ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଉପସ୍ଥିତ ଅଛନ୍ତି (୨୦/୮)।

# ଅପାଠୁଆ ପାଇଁ ସମସ୍ତେ କାଳ

✱ ପ୍ରଫେସର ଶତ୍ରୁଘ୍ନ ନାଥ

ମାତ୍ର ଖଣ୍ଡେ ଘର ଡିହ, ଅଙ୍କ କେତେ ହାତ ଲମ୍ବ, ସାମାନ୍ୟ ଓସାର । ମାଣିକ ସେଥିରେ ଚଳିଯାଉଛି । ଜୀବନଟା ଚଳି ଆସିଲାଣି । ଓଳି ଲେଖୁ ହାତେ ଓସାରର ଜାଗା, ସେଥିରେ ପୋଇ, ଝଟା, କଖାରୁ, ଲାଉ ଏମିତିକା କେତୋଟି ଲତା, ଯେଉଁ ବେଳରେ ଯାହା ଗଛରେ ମାଡ଼ିଥାଏ । ମୂଲ ଲାଗି ମାଣିକ ଚଳେ । ଡିହଟିକୁ ଜଗି ଗୁଲିଥାଏ । ଖଜଣା ବର୍ଷକୁ ବର୍ଷ ଦିଏ । ହେଳା କରେ ନାହିଁ । ହେଳା କଲେ ଡେଲା ବୁଡ଼ିଯିବ । ଭାରି ଡର । ଏଣୁ ଖଜଣା ନେବ । ଖଜଣା ନେଇ ବାବୁଙ୍କ ପାଖରେ ପଇଠ କରିବ । ବରଷକର କାମ । ଖଜଣା ମାତ୍ର ପାଞ୍ଚ ପୁଡ଼ିକା । ଏହା ଟଙ୍କାଏ ପଚିଶ ନୟା ହେଲା । ଏଥର ଏକ ଟଙ୍କା ପଚିଶ ପଇସା । ସେତକ ଧରି ବାବୁ ପାଖରେ ହାଜର । ବାବୁ କାଗଜ ଲେଉଟାଇଲେ । ପୁରୁଣା ପାଉତିକୁ ମିଳାଇଲେ । କହିଲେ, ଏଥର ଏତିକିରେ ହେବନାହିଁ । ମାଣିକର ଥକଲ ଗୁଡୁମ । ବାବୁ ଆଉ କେତେ । ଟିକିଏ ଅଟକି ଯାଇ ବାବୁ ମାଣିକକୁ ଚାହିଁଲେ । ଫେର କାଗଜ ଲେଉଟାଇ କହିଲେ "ପାଞ୍ଚ ଟଙ୍କା" । ଏଁ କଅଣ ହେଲା, ପାଞ୍ଚ ଟଙ୍କା ! ଏତେ ବଢ଼ି ଲା ? ବାବୁ କହିଲେ, ହେବ ନାହିଁ କଅଣ ? ବେଳକାଳ ଦେଖ । ଚାଉଳ, କାଠ, କିରୋସିନୀ, ଲୁଣ—ଏ ସବୁର ଦର କେତେ ବଢୁଛି । ଖଜଣା କଅଣ ଅଟକି ରହିବ ? ମାଣିକର ହଂସା ଉଡ଼ିଗଲା । ଘରକୁ ଫେରିଲା । ଡବର କଂସେ ପାଣି ପିଇଗଲା । କରିବ କଅଣ ? ହାଣ୍ଡି, ମାଠିଆ ଅଣ୍ଡାଳି ଟଙ୍କା ପାଞ୍ଚୋଟି ପାଇଲା । ଦୌଡ଼ିଯାଇ ଖଜଣା ପଇଠ କଲା । ପାଉତି ପାଇତି ରଖିଲା । କହିବ ବା କାହାକୁ ? ବାବୁଙ୍କ କଥା ବୁଝିଲା । ଦରଦାମ ବଢ଼ିବାରୁ ଖଜଣା ବଢ଼ିଗଲା ? ଏ କି କଥା ? ମାଣିକ ପଢ଼ି ଜାଣେ ନାହିଁ । ପାଉତି ପାଇତି ହେଲା । ହେଉଥିବ, ନୋହିଲେ ବାବୁ [illegible] ମିଛ କହିବେ ?

ଏହା ହେଉଛି ମାଣିକର କାଳ । ସେ ଅକ୍ଷର [illegible] ନାହିଁ । ପାଉଣି [illegible] ? ତେଣୁ ବେଳୁ ବଲବଲ କରି [illegible] । ଯେତେବେଳେ [illegible] ଦେଇ ଥାଉପାନ୍ତି । ତମହଙ୍କ କହୁଥିଲେ ହଁ, ଏହା ଅପାଠୁଆର କାଳ ! ଜଣେ ସାହୁକାରର କଥା । ସେ ଜଣ ବିଏ । ଗରିବ ଗୁମା ଅଭାବ ବେଳେରେ ଋଣ ଆଣେ । ତେବେ ପୋଛେ । [illegible] ବହନ୍ତି । ଫସଲ ଅମଳ ବେଳେ ଗୁଣିଦିଏ । ଆଜି ଗୁମା ସାହୁକାର ଦୁଆରରେ । [illegible] ପଡ଼ିଛି । ପିଲେ ଆଉଟୁ ପାଉଟୁ । ସାହୁକାର ପାଖରେ ହାତ ପତାଇଛି ଭୋକଶୋଷରୁ ରକ୍ଷାକର । ନିଅଣ୍ଟ ବେଳ । ଗୁହ୍ରି ଶୁଖାଇ ସାହୁକାର ନାହିଁ କଲା । ଚାଉଳ, ମାଣ୍ଡିଆ ସବୁ ଶେଷ । ଅନ୍ୟଠି ଦେଖ । ଗୁମାର ସବୁ ଦିନିଆ ସାହୁକାର । ଆଉ ସେ ଯିବ କେଉଁଆଡ଼େ ? କିଏ ଶୁଣିବ୍ ତା କଥା ? ସାହୁକାର ଟଳିଗଲା । ଏ ଲୋକଟା ମରିଯିବ । ପଛିଏଁ ମରିଯିବ । କହିଲା ଟଙ୍କା ନେବୁ । ଗୁମା ନିରୁପାୟ । ହଉ ସେଇଆ କରନ୍ତୁ । ସାହୁକାର ଟଙ୍କା ଦଶଟା ବାକ୍ସରୁ କାଢ଼ିଲା । ଗୁମା ହାତରେ ଦେଇ କହିଲା, ମୁଁ ଦେଉଛି ଦଶ, ତୁମେ ନେଉଛ ଦଶ, ତୁମ ବାବଦକୁ ଦଶ, ଛାଡ଼, ପାଞ୍ଚ ।" ଗୁମା ବୁଝି ନପାରି ପଚାରିଲା, ସାହୁକାର କେତେ ହେଲା ? ଉତ୍ତର ହେଲା, ବୁଝିଲୁ ନାହିଁ । ତୁମେ ନେଇଛ ଦଶ, ମୁଁ ଦେଲି ଦଶ, ସୁଧ ଦଶ, ଛାଡ଼ ପାଞ୍ଚ, ମୋତେ କୋଡ଼ିଏ ଦଶ । ଯା ଏଥର ଚଳିଯିବୁ । ମାଣ୍ଡିଆ, ଅଲସି ଅମଳ କଲେ ଦେଇଦେବୁ । ନ ହେଲେ ମୋ ଦୁଆର ମାଡ଼ିବୁ ନାହିଁ । ଡରରେ ଗୁମା ଥରହର । ସେ ହାତରେ ଧରିଛି ଦଶ, ସେପାଖକୁ ତିରିଶ, ଏଥିରେ ଗୁଡ଼ କାହିଁ ? ସେତ ମାତ୍ର ଦଶ ଟଙ୍କା ନେଇଛି । ନେଲା ଦଶ, ନେଇଛି ଦଶ—ଏହା ହେଲା କିପରି ? ଗୁମା ମୁଣ୍ଡରେ ପଶୁନାହିଁ । ସେ ହିସାବ ଜାଣେନାହିଁ । ଜାଣିଲେ ତ [illegible] ଜିଣନ୍ତା । ଗୁମା ଅପାଠୁଆ । ସେତ ପାଠ ପଢ଼ି ନାହିଁ । [illegible] ପାଇବ କେଉଁଠୁ । ସାହୁକାରଙ୍କ କବାଟ ଭିତରେ ତାକୁ [illegible] ଦିଶୁନି । ସବୁ ଅନ୍ଧାର ।

ତିଳରୁ ତାଳ ହେଲାପରି ଅପାଠୁଆକୁ ସବୁ କାଳ । ଅପାଠୁଆ କାହିଁକି ଅପାଠୋଇ ମଧ୍ୟ । ଅପାଠୋଇ ତ ବେଶୀ [illegible] ବୁଝିପାରେ ନାହିଁ । କୁହୁକ ଭଳି ଲାଗେ । ଶେଷରେ [illegible] କପାଳମାଡ଼ି ସବୁ ମାନିନିଏ । ଏଇ ପିଦେଇନାନୀ କଥା । [illegible] ପିଦେଇ ମାଉସୀ ବୋଲି ଡାକନ୍ତି । ଅଧୁନା [illegible] ପିଦେଇ କହନ୍ତି । ସେ ଅପାଠୋଇ । କାମ ହେଉଛି [illegible] ପଜନ୍ନୁନ [illegible] । ପାଖ ବଜାରରେ ବିକେ । ଯାହା ବି [illegible] । ସରସ୍ୱତୀ ପୂଜାଆଉ ଅଳ୍ପ ଦିନ ଅଛି । ତିନି [illegible] ଖୋଳି ଆଣିଛି । ଏହାକୁ ଶୀଳକରନ୍ଧ କହନ୍ତି । ଏବେ [illegible] ଅଛି । ଦିନେ ଦିନେ ଅଖେ ଅଖେ ଆସୁଛି । ଖା [illegible] କାଢ଼ିଛି । ମୁହରେ ତିନି [illegible] ଟଙ୍କା । [illegible]

ଅଟକି ଯାଆନ୍ତି । ଦଣ୍ଡେ ନିମିଷେ ପିଡେଇକୁ ଅନାନ୍ତି । ବଜାର ସରିଗଲା । ସବୁ ଦିନିକା ଦୋକାନୀ ତା'ର ଚିହ୍ନା । ତାକୁ ଭୁଲେଇ ବିକିବାକୁ ପଡ଼େନାହିଁ । ଝିଅକୁ ବସାଇଛି । ଚିନି ଥଳିରୁ ଓଜନ କରୁଛି । କିଲକ ବଟକର୍ ପଡ଼ିଛି । ବଟକରା ନାହିଁ, ଖଣ୍ଡେ ପଥର । ଓଜନ ଟେକିଲା ବେଳକୁ ଦୋକାନୀ ବଟକରା ପଟୁ ଦଣ୍ଡିକୁ ଆଙ୍ଗୁଳିରେ ମାଡ଼ି ବସୁଛି । ବେଶ୍‌ଗୁଡ଼ାଏ ଚିନି ଆଳୁ ପଡ଼ିଲେ କିଲୋଟିଏ ହେଉଛି । ଦୋକାନୀ ମନେ ମନେ ଖୁସି, "ବେଶ୍ ବେପାର ଆଗକୁ ସରସ୍ୱତୀ ପୂଜା । ଲଗୁଥାଳ ଚିନି ଆଳୁ । ଦର ବଢ଼ିବ । ଭଲ ଦି'ପଇସା ରୋଜଗାର ।" ଏଣେ ପିଡେଇ ଦୁଃଖରେ ଫାଟି ପଡୁଛି । "ଆଜି ତା'ର ସର୍ବନାଶ । ଘର ପାଇଁ କିଲେ ଚାଉଳ, ଝିଅ ପାଇଁ ନବାତ, ପେଟ ହେବନାହିଁ । ଆଗରୁ ତ ଏପରି ଆଣିଛି । ଦି' କିଲୋଯାଏଁ ଚାଉଳ କିଣେ । ପଳେ ଖଣ୍ଡେ ତେଲ, ଦୁଇ ତିନିଟା ଆଳୁ, ଲଙ୍କା କେତୋଟା ସେ ନିଏ । ଆଜି ଏପରି କମ୍ କାହିଁକି ? ସେ ତ ମାଇପି ଲୋକ । ସହଜରେ ଦୁର୍ବଳ, ସାହାସ ନାହିଁ । କେଉଁ ହିମତରେ ସେ କହିବ ? ପାଟି ଫିଟୁ ନାହିଁ । ହେଲେ ପାଠ ଦି' ଅକ୍ଷର ପଢ଼ିଥାନ୍ତା କି ? ଦଣ୍ଡି ପେଣ୍ଡରେ ପିଡେଇ ଛନ୍ଦି ହୋଇଯାଉଛି । ହିସାବ ଯାଣେ ନାହିଁ । ଏସବୁ ଯୋଗୁଁ ସେ ଦବିଯାଉଛି । କପାଳରେ କର ମାରୁଛି । କହୁଛି, "ମୋ କର୍ମ କପାଳ ମୋତେ ହେଲା କାଳ ।" ସବୁ କଥାକୁ ସେ ଆଦରି ନେଉଛି ।

ଏପରି ସବୁଠି ଏଇଆ । ଗାଁ କୁହ, ସହର କୁହ, ସବୁଠି ହରବର ଅପାଠୁଆ ଓ ଅପାଠୋଇ । ଅପାଠୁଆ ଅପେକ୍ଷା ଅପାଠୋଇ ବେଶୀ ହରବର । ବିଲବାଡ଼ି କାମ କୁହ । ମାଇପି ଶ୍ରମିକ ବେଶି କାମ କରନ୍ତି । ଧାନକଟା, ଧାନରୁଆ, ନଡ଼ା ମୁଣ୍ଡରେ ବୋହିବା ଆଦି କାମ କରନ୍ତି । ଘର ତିଆରି କାମରେ ରେଜାଙ୍କ ଦରକାର । ଅଳ୍ପ ପଇସା ମଜୁରି ନେବେ, ବେଶି କାମ ପାଇଟି କରିବେ । ମିସ୍ତ୍ରୀର ଖୁହିଦା ଜାଣି ଚଟ୍‌କରି ଇଟା ବଢ଼େଇଦେବେ, କେଉଁଠି କେଉଁଠି ଅଧା କେଉଁଠି ଗୋଟା, ଅଲଗା ଅଲଗା କରି । ମାଟି କାମରେ ମୂଲିଆଣି ଦରକାର । ରାସ୍ତାକୁ ପକ୍‌କା କରିବା ପାଇଁ ମାଇପି ଶ୍ରମିକ ଆବଶ୍ୟକ । ରାସ୍ତାଆରେ ଗୋଡ଼ି ମୁଣ୍ଡେଇ ଦିଅନ୍ତି । ରାସ୍ତାଆକୁ ବୁଲାଇ ଏପରି ଛାଟି ଦିଅନ୍ତି ଯେ ଗୋଡ଼ି ଗୋଟି ଗୋଟି ହୋଇ ବିଛୁଡ଼ି ପଡ଼େ । ଏସବୁ ମାଇପି ଶ୍ରମିକଙ୍କ କୌଶଳ । ହପ୍ତାକୁ ହପ୍ତା ମଜୁରି ପାଆନ୍ତି । ମଜୁରି ପାଇବା ବାଟିରେ ଅନେଇ ଥିବେ । ସଞ୍ଜ ହୋଇଯାଏ । ମିସ୍ତ୍ରୀ ହେଉ ବା ଠିକାଦାର ହେଉ, ଖୁହିଁ ଥିବେ । ମଜୁରି ଦିଆଯିବ । ହିସାବ କିଏ ବୁଝୁଛି ? ସାତଦିନର ହପ୍ତା, କିନ୍ତୁ କାହା ପାଇଁ ଚାରିଦିନ, କାହାପାଇଁ ପାଞ୍ଚଦିନ ହିସାବ କରାଯାଏ । ମୂଲ ନେବା ଆଗରୁ ଯାହେଣା ଖାତାରେ ଟିପ ଚିହ୍ନ ନିଆଯାଇଥାଏ । ଯାହାର ଯାହା ପଣା ହେଉଛି, ଆଉ ପାଳିକୁ ଭରଣା କରାଯିବ ବୋଲି ବୁଝାଯାଏ । ସେ ପାଳିରେ ବି ସେଇଆ, ଆଉ ଟିପ ଚିହ୍ନ, ତା'ପରେ ଯାହା ପାଇଁ ଯାହା, କିଛି ଥୟ ନଥାଏ । ଅପାଠୁଆର ଡାହାଣ ହାତ ବୁଢ଼ା ଅଙ୍ଗୁଳି ଓ ଅପାଠୋଇର ବାମ ହାତ ବୁଢ଼ା ଅଙ୍ଗୁଳି ଟିପଚିହ୍ନ । ଏହା ହିଁ ସମସ୍ତଙ୍କ ପାଇଁ କାଳ । ଏମାନେ ନାଁ ଲେଖି ଜାଣନ୍ତି ନାହିଁ । ହିସାବ କରିପାରନ୍ତି ନାହିଁ । ବୁଝି ପାରନ୍ତି ନାହିଁ । ଶୋଷଣ, କଷଣ ଭୋଗନ୍ତି । ମୂଲ ନେଇ ଫେରୁ ଫେରୁ ରାତି ହୋଇଯାଏ । ଘରେ ରୋଷେଇ, ଡାଲେଣି ଦରକାର, ଚାଉଳ, ପରିବା କିଣାଯିବ । କୋଡ଼ର ଛୁଆଙ୍କ କଥା ବୁଝାଯିବ । ମାଇପି ଶ୍ରମିକର ଏତେ ଗଞ୍ଜଣା । ଟିପଚିହ୍ନ ସବୁ କାଳର ମୂଳ । ହାତଟାକୁ ଟାଣିନେଇ ଟିପ ଦିଆଯିବ । ମାନ ନାହିଁ, ମର୍ଯ୍ୟାଦା ନାହିଁ । ଅପାଠୋଇ ତ ଗରିବ । ଗରିବ ହେତୁ ସେ ଅପାଠୋଇ । ପୁଣି ଗରିବ ଲୋକର ହାତ ଧରିଛି । ଗରିବ ମାଇପ ସମସ୍ତଙ୍କ ଟାହିଟାପରା । ଦି' ଅକ୍ଷର ପଢ଼ିଥିଲେମାନମର୍ଯ୍ୟାଦା ଦାବି କରନ୍ତା । ସେତ ଅଭାଗୀ । ଯିଏ ଯାହା କହୁ, ସେସବୁ ଚଳାଇ ନିଏ ।

ଏ ତ ଏପରି । ବାହୁନିଲେ ଅନେକ କଥା ହେବ । ମୋଟେ ସରିବ ନାହିଁ । ଆଉ ଏକ ଦିଗରୁ ଦେଖିବା । ଅପାଠୁଆର ତ ସମସ୍ତେ କାଳ । ସେ ମଧ୍ୟ ନିଜେ ନିଜର କାଳ ହୁଏ । ବାଟ ଭୁଲିଯାଏ । ବିପଦକୁ ଟାଣି ଆଣେ । ଆଉ ପଛକୁ ସୁଧାରି ହୁଏ ନାହିଁ । ଆଗୁ ହୋଇଥିଲେ ସାବଧାନ, ସେ ସୁଖରେ କାଳ କାଟନ୍ତା । ଏଇ ଶୁକୁଟି ବୋଉ କଥା ଶୁଣନ୍ତୁ । ନାଁରେ ସେ ଶୁକୁଟି ବୋଉ, ଦେଖିବାକୁ ଶୁକୁଟି ମଧ୍ୟ । ପାଞ୍ଚୋଟି ଝିଅ । ଛୁଆ, ଶୁକୁଟି । ପୁଅଟିଏ ପାଇଁ ମନ । ପଡ଼ିଶା ଘରେ ସମସ୍ତଙ୍କ ପୁଅ । ମାତ୍ର ତା'ର ନାହିଁ । ଝିଅର ମା, ମୁହଁ ଶୁଖୁନାହାନ୍ତି । ଶୁକୁଟି ବୋଉ ମଧ୍ୟ ଭାବୁଛି, ପୁଅଟିଏ ହେଲେ ମଲାବେଳକୁ ମୁହଁରେ ପାଣି ମୁନ୍ଦେ ଦିଅନ୍ତା । ସେ ପାରି ହୋଇ ଯାଆନ୍ତା । ଶୁକୁଟି ବାପା ଥଙ୍ଗେଇ ମଙ୍ଗେଇ ସେମିତି କହୁଛି । ସେ ବି ଶୁକୁଟି ଗଲାଣି । ଶୁକୁଟି ଯିବ ନାହିଁ କାହିଁକି ? ଜଣକ ରୋଜଗାରରେ ସାତ ପ୍ରାଣୀ କୁଟୁମ୍ବ ପୋଷା । ଝିଅଗୁଡ଼ାକ, ହାତକୁ ଦି' ହାତ ହେବେ । ଏହି ଚିନ୍ତାରେ ତା ମୁଣ୍ଡ ଭାଙ୍ଗି ପଡୁଛି । ସକାଳୁ ଉଠିଲେ, ଭାତ ନାହିଁ, ଲୁଣ ନାହିଁ, ଲଙ୍କା ନାହିଁ.........ସବୁ ନାହିଁର ଚିତ୍କାର । କି ହେଲା ଏ କଥା । ଆପଣା ହଣ୍ଡେ ଜିଭ୍ବା ଛେଦି । କିନ୍ତୁ ଲେଡ଼ିଗୁଡ଼ କହୁଣୀକୁ ଗଲାଣି । ଟିକିଏ ଭାବିଥିଲେ, ସାବଧାନ ହୋଇ ପାରିଥାନ୍ତା । ସୁଖର ସଂସାର ହୁଅନ୍ତା । ମିଛରେ ଲୋକଙ୍କ କଥାରେ ଭାସିଯାଇ ଆଜି ଏପରି ହନ୍ତସନ୍ତ ।

ସତ କଥା, ଡିଲକୁ ତାଳ, ଅପାଠୁଆ ପାଇଁ ସମସ୍ତେ କାଳ । ନିଜେ ବି ନିଜର କାଳ । ହଉ, ତେବେ କରିବା କଅଣ ? ସବୁ ନିରକ୍ଷର ସାକ୍ଷର ହେବେ । ସେମାନେ ପାଠ ପଢ଼ିବେ । ଦେଶ ଦୁନିଆ କଥା ଜାଣିବେ । ନିଜର ମଙ୍ଗଳ ନିଜେ କରିବେ । ସେମାନଙ୍କର ଜୀବନ ଉନ୍ନତ ହେବ । ଏଥିପାଇଁ ନିରକ୍ଷର ଲୋକମାନେ ଆନ୍ଦୋଳନ କରିବେ । ସାକ୍ଷର ହେବା ସେମାନଙ୍କ ଅଧିକାର, ଅପାଠୁଆ ହୋଇ ହନ୍ତସନ୍ତ ହେବେ ନାହିଁ । ଅପାଠୁଆ ଲୋକମାନେ ଏକଜୋଟ ହେବେ । ସେମାନେ ସାକ୍ଷର ହେବାକୁ ଦାବୀ କରିବେ । ଏହା ସରକାରଙ୍କ ଯୋଜନା । ଆଗରୁ ସାକ୍ଷରତା କେନ୍ଦ୍ର ଖୋଲା ଯାଉଥିଲା । ତିରିଶ ଜଣ ଯାଏଁ ଅପାଠୁଆ ଲୋକଙ୍କୁ ଡକା ଯାଉଥିଲା । ସେମାନେ ସଞ୍ଜେ ବା ସକାଳେ ସୁବିଧା ଅନୁସାରେ ପାଠ ପଢୁଥିଲେ । ପ୍ରତି କେନ୍ଦ୍ର ପାଇଁ ଜଣେ ପଢ଼ାଇବା ଲୋକ ଥିଲେ । ଏପରି କଲେ ସାକ୍ଷରତା ପାଇଁ

ଅନେକ ସମୟ ଲାଗିବ । ଏବେ ସେଥିପାଇଁ ଗୋଟିଏ ଗୋଟିଏ ଜିଲ୍ଲାକୁ ଧରାଯାଉଛି । ଏକକାଳୀନ ସାରା ଜିଲ୍ଲାରେ ଏହି ସାକ୍ଷରତା କାମ ଚାଲିବ । ଜିଲ୍ଲାଟି ସାକ୍ଷର ହୋଇଗଲେ ସାକ୍ଷରତା ପରବର୍ତ୍ତୀ କାମ ଚାଲିବ । ଏହା ନିରନ୍ତର ଚାଲିବ । ନୂଆ ନୂଆ କାମ, କୌଶଳ ଓ କଥା ଶିଖାଯିବ । ଏଥିପାଇଁ ଯୋଜନା କରାଯାଉଛି । ବହିପତ୍ର ଲେଖାଯାଉଛି । କିପରି ସାକ୍ଷର କରାଯିବ ସେଥି ପାଇଁ ଶିକ୍ଷକ ତାଲିମ ଦିଆଯାଉଛି । କମିଟି ଗଢ଼ାଯାଉଛି । ସରକାର ଅର୍ଥ ମଞ୍ଜୁର କରୁଛନ୍ତି । ଅପାଠୁଆ ଲୋକମାନେ ଆଗେଇ ଆସିବା ଦରକାର । ଅକ୍ଷର ଦୀପ ଜାଳିବା ପାଇଁ ଦାବୀ କରିବା ଉଚିତ । ଅସୁବିଧା ଦୂର କରିବା ପାଇଁ ଅପାଠୁଆମାନେ ଆନ୍ଦୋଳନ କରିବା ଉଚିତ୍ । ଗାଁକୁ ରାସ୍ତା ନଥିଲା । ପିଇବା ପାଣି ମିଳୁ ନଥିଲା । ଛୋଟ ପିଲାଙ୍କ ସ୍କୁଲ ନଥିଲା । ଡାକ୍ତର ଖାନା ନଥିଲା । ଗାଁ ଲୋକେ ପାଟି କଲେ । ଏକଜୋଟ ହେଲେ । ଏସବୁ ଅସୁବିଧା ଦୂର ହେଲା । ଗାଁ ଲୋକ ମଧ୍ୟ ସହଯୋଗ କଲେ । ସେହି ପରି ପାଠୁଆ ହେବା ପାଇଁ ଗାଁ ସାରା, ଜିଲ୍ଲା ସାରା ଅପାଠୁଆମାନେ ପାଟି କରିବେ । ସହଯୋଗ କରିବେ । ପାଠର ମଜା ଚାଖିବେ । ଆମ ଭଲ ପାଠ କେତେ ଭଲ ପାଠ ଅଛି । ପାଠପଢ଼ା ବଡ଼ ମଜା । ଥରେ ଚାଖିଲେ, ଜୀବନଯାକ ଛାଡ଼ି ହୁଏ ନାହିଁ ।

ଆମ ସୁବିଧା ପାଇଁ ସରକାର ଆଇନ୍ କରିଛନ୍ତି । ଆମ ଗାଁର ଗଉରା ବେମାର ପଡ଼ିଲା । ଡାକ୍ତରବାବୁ ଔଷଧ ଲେଖିଦେଲେ । ଔଷଧ କିଣା ଗଲା । ଗଉରାର ପୁଅ ସହରୁ ଔଷଧ କିଣି ଆଣିଲା । ସଉରା ଅପାଠୁଆ । ଦୋକାନୀ ତାକୁ ଠକାଇ ନେଇ ଅକାମୀ ଔଷଧ ଦେଲେ । ଗଉରା ଭଲ ହେଲା ନାହିଁ, ମରିଗଲା । ସଉରା ପଢ଼ିଥିଲେ ଔଷଧ ଉପରେ ସମୟ ଦେଖି କିଣିଥାନ୍ତା । ବାପା ଭଲ ହୋଇଥାନ୍ତେ । ଦୋକାନୀ ଠକାଇଲେ । ସଉରା ଖାଉଟି ସୁରକ୍ଷା ଆଇନ୍ ଜାଣିଥିଲେ ଦୋକାନୀଠାରୁ କ୍ଷତିପୂରଣ ପାଇଥାନ୍ତା । ସଉରା ନିରକ୍ଷର। ସେ ସବୁ ହରାଇ ବସିଲା । ଏପରି ଅନେକ ଆଇନ୍ ଅଛି। ପାଠ ପଢ଼ିଲେ ଜାଣି ହେବ । କୁହାଯାଏ–

"ଜାଣିଲେ ଜିଣିଜିବ, ହାରିବ ନାହିଁ ।"



ଓଡ଼ିଶା ରାଜ୍ୟ କାଜୁ ଉନ୍ନୟନ ନିଗମର ଅଧ୍ୟକ୍ଷ ଶ୍ରୀ ସରୋଜ କୁମାର ପାଣିଗ୍ରାହୀ, ପରିଚାଳନା ନିର୍ଦ୍ଦେଶକ ଶ୍ରୀ ହରିହର ମିଶ୍ର ଓ ପ୍ରଶାସନିକ ଅଧିକାରୀ ଶ୍ରୀ ବି: ବି: ଜଗଦେବ ରାଜଭବନଠାରେ ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରି 'କଳିଙ୍ଗ କାଜୁ ସ୍ମୃତି' ପ୍ରଦାନ କରୁଛନ୍ତି ।

# ପରିବାର କଲ୍ୟାଣ ଯୋଜନାରେ ମହିଳା

* ଶ୍ରୀମତୀ ମଞ୍ଜୁଳା ମହାନ୍ତି

ଆମ ସମାଜରେ ଦେଖା ଦେଇଥିବା ବିଭିନ୍ନ ସମସ୍ୟା ମଧ୍ୟରେ "ଜନସଂଖ୍ୟା ବୃଦ୍ଧି" ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତର ଜନସଂଖ୍ୟା ଯେପରିଭାବେ ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି ତାହା ସମସ୍ତଙ୍କ ପାଇଁ ବର୍ତ୍ତମାନ ଚିନ୍ତାର ବିଷୟ ।

ଓଡ଼ିଶାରେ ଜନସଂଖ୍ୟା ତଦନୁରୂପେ ବଢ଼ି ଚାଲିଛି । ଏହାଦ୍ୱାରା ରାଜ୍ୟର ଅର୍ଥନୈତିକ ପରିସ୍ଥିତି ଦୁର୍ବଳ ହେବା ସ୍ୱାଭାବିକ । ରାଜ୍ୟର ଅର୍ଥନୀତି ଦୁର୍ବଳ ହେଲେ ତା'ର ଉନ୍ନତି ଆଶା କରାଯାଇ ପାରେନା । ଗୋଟିଏ ରାଜ୍ୟକୁ ଉନ୍ନତ କରିବାକୁ ହେଲେ ରାଜ୍ୟର ଜନସଂଖ୍ୟା ବୃଦ୍ଧି ପ୍ରତି ଦୃଷ୍ଟି ଦେବାକୁ ହେବ । ଅଳ୍ପ ଜନସଂଖ୍ୟା ବିଶିଷ୍ଟ ରାଜ୍ୟ ବା ରାଷ୍ଟ୍ର ସମଗ୍ର ଦେଶରେ ବା ପୃଥିବୀରେ ଶୀର୍ଷ ସ୍ଥାନ ଅଧିକାର କରିଥାଏ । ତେଣୁ ପ୍ରଥମେ ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ଆବଶ୍ୟକ । ଜନସଂଖ୍ୟାକୁ ନିୟନ୍ତ୍ରଣାଧୀନ କରିବା ପାଇଁ ଆମ ରାଜ୍ୟ ସରକାର ବହୁ ପଦକ୍ଷେପ ଗ୍ରହଣ କରିଛନ୍ତି । "ପରିବାର କଲ୍ୟାଣ" ଯୋଜନାକୁ ସରକାର ବିଭିନ୍ନ ଉପାୟରେ ଲୋକମାନଙ୍କ ପାଖରେ ପହଞ୍ଚାଇବାରେ ଲାଗିଛନ୍ତି । ନିଜ ତରଫରୁ ମଧ୍ୟ ଏହାକୁ ରୋକିବା ଦିଗରେ ବହୁ ସୁବିଧା ସୁଯୋଗ ଯୋଗାଇ ଦେଉଛନ୍ତି । ତେବେ ସରକାରଙ୍କର ପରିବାର କଲ୍ୟାଣ କାର୍ଯ୍ୟକ୍ରମର ସମ୍ପୂର୍ଣ୍ଣ ସଫଳତା ଜନସାଧାରଣଙ୍କ ପୂର୍ଣ୍ଣ ସହଯୋଗ ଉପରେ ନିର୍ଭର କରେ । ଯଦି ଜନସାଧାରଣ ସମ୍ପୂର୍ଣ୍ଣ ଭାବରେ ସହଯୋଗ ନକରନ୍ତି, ତେବେ ଜନସଂଖ୍ୟା ବୃଦ୍ଧି ରୋକିବା ସମ୍ଭବ ନୁହେଁ । ସମାଜର ପ୍ରତ୍ୟେକ ଦମ୍ପତି ଯଦି ସାଂସାରିକ ଜୀବନରେ ପାଦ ଦେବା ସହ ସୁସ୍ଥ, ସୁନ୍ଦର ଓ ଛୋଟ ପରିବାରଟିଏ ଗଢ଼ିବାପାଇଁ ନିଷ୍ପତ୍ତି ନିଅନ୍ତି, ତେବେ ନିଜ ପରିବାର ଛୋଟ ହେବା ସଙ୍ଗେ ସଙ୍ଗେ ରାଜ୍ୟ ତଥା ରାଷ୍ଟ୍ରର ମଧ୍ୟ ମଙ୍ଗଳ ହେବ । ସରକାର ପରିବାର କଲ୍ୟାଣ ଯୋଜନା ଉପରେ ବହୁ କାର୍ଯ୍ୟକ୍ରମ ହାତକୁ ନେଇ ଉଚିତ୍ ପଦକ୍ଷେପ ଗ୍ରହଣ କରିଛନ୍ତି । ହେଲେ ସେସବୁର ପ୍ରକୃତ କାର୍ଯ୍ୟକାରିତା ନିର୍ଭର କରେ ଜନସାଧାରଣଙ୍କ ଉପରେ । ପରିବାର କଲ୍ୟାଣ କାର୍ଯ୍ୟକ୍ରମକୁ ସଫଳ ରୂପ ଦେବା ଆମ ସମସ୍ତଙ୍କର କର୍ତ୍ତବ୍ୟ ।

ଆଜିକାଲି ପ୍ରତ୍ୟେକ ଦିନ ସମ୍ବାଦ ପତ୍ର, ଦୂରଦର୍ଶନ ଓ ବିଜ୍ଞାପନ ଇତ୍ୟାଦି ମାଧ୍ୟମରେ ଜନସାଧାରଣଙ୍କୁ ସଚେତନ କରାଇ ଦିଆଯାଉଛି । ସରକାରଙ୍କ ପକ୍ଷରୁ ଦିଆଯାଉଥିବା ସମସ୍ତ ସୁବିଧା ସୁଯୋଗ ବିଷୟରେ ଅବଗତ କରାଇ ଦିଆଯାଉଛି । ପରିବାର କଲ୍ୟାଣ ଯୋଜନାର ସଫଳତା ବିଶେଷ କରି ସେ ଦିଗରେ ମହିଳାମାନଙ୍କର ସଚେତନତା ଉପରେ ନିର୍ଭର କରେ । କାରଣ ମହିଳାମାନେହିଁ ସନ୍ତାନକୁ ଜନ୍ମ ଦେଇଥାନ୍ତି ଏବଂ ତା'ର ଲାଳନ ପାଳନ କରିଥାନ୍ତି । ତେଣୁ ସେମାନେ ଯଦି ଏଦିଗରେ ପୂର୍ଣ୍ଣ ସହଯୋଗ ନକରନ୍ତି, ତେବେ ପରିବାର କଲ୍ୟାଣ ଯୋଜନା ସଫଳ ହୋଇପାରିବ ନାହିଁ । ସେଥିପାଇଁ ଆବଶ୍ୟକ ଦୃଢ଼ ମନୋବଳ । ତେବେ ଏହି ମନୋବଳ ପାଇଁ ଆବଶ୍ୟକ ଶିକ୍ଷା । ଶିକ୍ଷିତା ମହିଳାମାନେ ଏଦିଗରେ ଯେତେ ଶୀଘ୍ର ସଚେତନ ହେବେ, ଅଶିକ୍ଷିତା ମହିଳାମାନେ ସେତେ ପରିମାଣରେ ସଚେତନ ହୋଇପାରିବେ ନାହିଁ । ନିଜର ସମସ୍ୟା ସବୁକୁ ଜଣେ ଶିକ୍ଷିତା ନାରୀ ଅନୁଭବ କରିପାରେ ଏବଂ ତା'ର ସମାଧାନ କରିପାରେ । ଅଶିକ୍ଷିତା ନାରୀ ତାହା ପାରେନା । ସେହିପରି ରାଜ୍ୟ ବା ରାଷ୍ଟ୍ରର କଥା । ରାଜ୍ୟ ବା ରାଷ୍ଟ୍ରରେ ଯେତେ ପରିମାଣରେ ଶିକ୍ଷିତା ନାରୀଙ୍କର ସଂଖ୍ୟା ବୃଦ୍ଧି ପାଇବ ସେତେ ପରିମାଣରେ ରାଜ୍ୟରୁ ତଥା ରାଷ୍ଟ୍ରର ଥିବା ସମସ୍ୟା ସମାଧାନ ହେବ । ଆମ ରାଜ୍ୟରେ ଜନସଂଖ୍ୟା ବୃଦ୍ଧି ସମସ୍ୟା ବର୍ତ୍ତମାନ ଏକ ମୁଖ୍ୟ ସମସ୍ୟା ଭାବରେ ଦେଖାଦେଇଛି । ଏହି ଜନସମସ୍ୟା ବୃଦ୍ଧି ରୋକିବାରେ ମହିଳାମାନଙ୍କ ଭୂମିକାର ଗୁରୁତ୍ୱ ଯଥେଷ୍ଟ ରହିଛି । ତେବେ ପରିବାର କଲ୍ୟାଣର ସମ୍ପୂର୍ଣ୍ଣ ସଫଳତା ସେମାନଙ୍କର ବୁଝିବା ଉପରେ ନିର୍ଭର କରେ । ଲୋକମାନେ ଯଦି ବୁଝିବେ ଗୋଟିଏ କିମ୍ବା ଦୁଇଟି ସନ୍ତାନ ସେମାନଙ୍କ ପାଇଁ ଯଥେଷ୍ଟ ତେବେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ବେଶ୍ ସଫଳ ଭାବେ କାର୍ଯ୍ୟକାରୀ ହୋଇପାରିବ । ଗୋଟିଏ କିମ୍ବା ଦୁଇଟି ସନ୍ତାନକୁ ଭଲ ମଣିଷଟିଏ କରି ଗଢ଼ିପାରିଲେ ରାଜ୍ୟ ଓ ଦେଶକୁ ଉତ୍ତମ ନାଗରିକ ଦେବାର ଗୌରବ ଲାଭ କରିବେ ।

ଆଜିକାଲିର ଅତ୍ୟାଧୁନିକ ଯୁଗରେ ମଧ୍ୟ କେହି କେହି ପୁଅଟିଏ ପାଇଁ ଆଗ୍ରହୀ । କାରଣ ପୁଅ ପିଣ୍ଡଦାନକରିବ । ପିତାମାତାଙ୍କୁ ପିଣ୍ଡଦାନ କରିବାର ଅଧିକାର କେବଳ ପୁଅର ରହିଛି । ସେ ଅଧିକାରରୁ ଝିଅ ବଞ୍ଚିତା । ସେଥିପାଇଁ ଅନେକଙ୍କର ମତ, ଜୀବନରେ ପୁଅଟିଏର ଆବଶ୍ୟକତା ରହିଛି । ପୁଅକୁ ଅପେକ୍ଷା କରି କରି ସାତ ଆଠଟି ଝିଅ ହୋଇଥିବାର ମଧ୍ୟ ଦୃଷ୍ଟାନ୍ତ ରହିଛି । ଏ ଚିନ୍ତା ଯେ ସମ୍ପୂର୍ଣ୍ଣ ଭ୍ରମାତ୍ମକ ତାହା ପ୍ରତ୍ୟେକ ହୃଦୟଙ୍ଗମ କରିବା

ଉଚିତ୍ । ଏକାଳର ଝିଅ ପୁଅଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ ଏହା ନିଶ୍ଚିତ । ଆଜି ସମାଜରେ ପ୍ରତ୍ୟେକ ସ୍ତରରେ ଝିଅମାନେ ସମ୍ମାନିତା, ପ୍ରତ୍ୟେକ କାର୍ଯ୍ୟରେ ସେମାନେ ଆଗୁଆ । ତେଣୁ ପୁଅ ହେଉ ବା ଝିଅ ହେଉ ଗୋଟିଏ ବା ଦୁଇଟି ସନ୍ତାନ ଯଦି ଯଥେଷ୍ଟ ବୋଲି ପ୍ରତ୍ୟେକ ସ୍ତ୍ରୀ ପୁରୁଷ ମନେକରନ୍ତି ତେବେ ରାଜ୍ୟ ବା ରାଷ୍ଟ୍ରରେ ଜନସଂଖ୍ୟା ଏପରି ଭାବେ ବୃଦ୍ଧି ପାଆନ୍ତାନାହିଁ ।

ରାଜ୍ୟ ସରକାର ପରିବାର କଲ୍ୟାଣ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଇଆସିଛନ୍ତି । ମା ଓ ଶିଶୁର ସ୍ୱାସ୍ଥ୍ୟ ଦିଗରେ ଅଧିକ ଯତ୍ନବାନ ହୋଇଛନ୍ତି । ମା ଓ ଶିଶୁଙ୍କୁ ସୁସ୍ଥ ରଖିବା ପାଇଁ ଏବଂ ସନ୍ତାନ ଜନ୍ମରେ ବ୍ୟବଧାନ ରଖିବା ପାଇଁ ଗ୍ରାମାଞ୍ଚଳର ସ୍ୱାସ୍ଥ୍ୟକେନ୍ଦ୍ର ଓ ସହରାଞ୍ଚଳର ଡାକ୍ତରଖାନାଗୁଡ଼ିକ ଜରିଆରେ ମା'ମାନଙ୍କୁ ଗର୍ଭ ନିରୋଧକ ଖାଇବା ବଟିକା ବିନା ମୂଲ୍ୟରେ ଯୋଗାଇ ଦିଆ ଯାଉଛି ସନ୍ତାନ ଜନ୍ମରେ ବ୍ୟବଧାନ ରକ୍ଷା କରିବା ପାଇଁ ଆମ ରାଜ୍ୟରେ ୧୯୯୦-୯୧ରେ ୬୫,୭୬୦ ଜଣ, ୧୯୯୧-୯୨ରେ ୬୧,୪୯୫ ଜଣ ଓ ୧୯୯୨-୯୩ରେ ୨୫,୬୮୭ ଜଣ ମହିଳା ଖାଇବା ବଟିକା ବ୍ୟବହାର କରିଛନ୍ତି ଏବଂ ୧୯୯୦-୯୧ରେ ୩,୦୭,୯୬୯ ଜଣ ୧୯୯୧-୯୨ରେ ୨,୬୭,୮୭୯ ଜଣ ଓ ୧୯୯୨-୯୩ରେ ୧,୭୦,୬୩୨ ଜଣ ମହିଳା କପରଟି ବ୍ୟବହାର କରିଛନ୍ତି । ପୁଅ ହେଉ ବା ଝିଅ ହେଉ ଦୁଇଟି ସନ୍ତାନ ଲାଭ ପରେ ପରିବାରକୁ ସୀମିତ ରଖିବା ପାଇଁ ମା'ମାନଙ୍କୁ ସ୍ଥାୟୀ ଗର୍ଭ ନିରୋଧ ପଦ୍ଧତି ନିମନ୍ତେ ବ୍ୟବସ୍ଥା କରାଯାଉଛି । 'ମିନିଲାପାରୋଟୋମୀ' ପଦ୍ଧତି ଦ୍ୱାରା ଅନେକ ମହିଳା ସ୍ଥାୟୀ ଭାବରେ ପରିବାର ନିୟନ୍ତ୍ରଣ କରିପାରୁଛନ୍ତି । ଏହି ପଦ୍ଧତିଟି ସରଳ, ସହଜ ଓ ନିରାପଦ ହୋଇଥିବାରୁ ଆମ ରାଜ୍ୟର ଡାକ୍ତରମାନେ ଏହା ଦକ୍ଷତାର ସହ ସମ୍ପାଦନ କରୁଥିବାରୁ ଅନ୍ୟ ରାଜ୍ୟରୁ ଚିକିତ୍ସକମାନେ ଆସି ଏହାର ବୈଷୟିକ କୁଶଳତା ସମ୍ପର୍କରେ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ତାଲିମ ମଧ୍ୟ ଗ୍ରହଣ କରିଛନ୍ତି । ଏତଦ୍ ବ୍ୟତୀତ ଅତ୍ୟାଧୁନିକ ପଦ୍ଧତିରେ ସମ୍ପାଦିତ 'ଲାପାରୋସ୍କୋପି' ଅପରେସନ୍ ପାଇଁ ବହୁ ସଂଖ୍ୟାରେ ମହିଳାମାନେ ଆଗ୍ରହ ପ୍ରକାଶ କରୁଛନ୍ତି । ୧୯୯୦-୯୧, ୧୯୯୧-୯୨ ଏବଂ ୧୯୯୨-୯୩ରେ ସ୍ଥାୟୀ ଗର୍ଭ ନିରୋଧକ ପଦ୍ଧତି ଗ୍ରହଣ କରିଥିବା ଦମ୍ପତିଙ୍କ ସଂଖ୍ୟା ଯଥାକ୍ରମେ ୧,୫୪,୯୩୧, ୧,୩୭,୨୯୯ ଏବଂ ୭୭,୦୪୭ । ଲୋକମାନଙ୍କ ମନରେ ଏ ଦିଗରେ ଆଗ୍ରହ ସୃଷ୍ଟି ପାଇଁ ସରକାରଙ୍କ ତରଫରୁ ଗୋଟିଏ ବା ଦୁଇଟି ସନ୍ତାନ ପରେ ସ୍ଥାୟୀ ଗର୍ଭ ନିରୋଧ ପଦ୍ଧତି ଗ୍ରହଣ କରିଥିବା ଦମ୍ପତିଙ୍କୁ ସବୁଜ ପତ୍ରିକା ଯୋଗାଇ ଦିଆ ଯାଉଛି ଏହାକୁ ପ୍ରୋତ୍ସାହନ ମୂଳକ ବ୍ୟବସ୍ଥା କୁହାଯାଏ । ଏ ସମସ୍ତ କାର୍ଯ୍ୟର ସଫଳତା ନିମନ୍ତେ ସ୍ୱାସ୍ଥ୍ୟ, ଶିକ୍ଷା, ସୂଚନା ଓ ସହଯୋଗ କାର୍ଯ୍ୟକ୍ରମକୁ ଅଧିକ ଗ୍ରାମାଭିମୁଖୀ କରାଯାଉଛି । ଏଥି ନିମନ୍ତେ ସମନ୍ୱିତ ଶିଶୁ ବିକାଶ ବ୍ଲକ୍ ସବୁରେ ମଦସି ବ୍ଲକ୍ ଓ ୭ଟି ଜିଲ୍ଲାରେ 'ସଂଯୋଜିକା ମହିଳା' (ଲିଙ୍କ୍ ଓ୍ୱାଇମେନ୍) ନାମକ ଏକ ନୂତନ କାର୍ଯ୍ୟକ୍ରମ ପରୀକ୍ଷାମୂଳକ ଭାବେ କାର୍ଯ୍ୟକାରୀ ହୋଇଛି ।

ଏହିଭଳି ସରକାରଙ୍କ ପକ୍ଷରୁ ପରିବାର କଲ୍ୟାଣ ଯୋଜନାକୁ କାର୍ଯ୍ୟକାରୀ କରିବା ନିମନ୍ତେ ବହୁ ପଦକ୍ଷେପ ଗ୍ରହଣ କରିଛନ୍ତି । ବିଶେଷଭାବେ ଉଲ୍ଲେଖ ଯୋଗ୍ୟଯେ ଆମର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏହି ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଏବେ ନିକଟରେ କେତେକ ନୂତନ ନୀତି ପ୍ରଣୟନ କରି କାର୍ଯ୍ୟକ୍ରମକୁ ସହଯୋଗ କରୁଥିବା ବ୍ୟକ୍ତିମାନଙ୍କୁ ପ୍ରୋତ୍ସାହନ ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଅସହଯୋଗ କାରୀମାନଙ୍କ ନିମନ୍ତେ କେତେକ କଠୋର ବ୍ୟବସ୍ଥା ଗ୍ରହଣ କରିଛନ୍ତି । ବହୁ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ମାତ୍ର ପ୍ରକୃତ ପକ୍ଷରେ ଏସବୁର ସଫଳତା ଜନସଚେତନତା ତଥା ସହଯୋଗ ଉପରେ ନିର୍ଭର କରେ ।

---

ସହକାରୀ ଶିକ୍ଷୟିତ୍ରୀ,
ବିପିନି ବିହାରୀ ମୂକ ବଧିର ବିଦ୍ୟାଳୟ,
ଭୁବନେଶ୍ୱର ।

# ସଙ୍ଗୀତ ସାଧକ
# ମନମୋହନ ସାବତ ଶର୍ମ୍ମା

*** ଶ୍ରୀ ପ୍ରାଣବନ୍ଧୁ ଜେନା**

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁ ଅଳ୍ପ କେତେଜଣ ସଙ୍ଗୀତ ସାଧକ ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଥିଲେ, ସ୍ୱର୍ଗତ ମନମୋହନ ସାବତ ସେମାନଙ୍କ ମଧ୍ୟରେ ଅନ୍ୟତମ । ଊନବିଂଶ ଶତାବ୍ଦୀର ଶେଷ ଦଶକ ମଧ୍ୟରେ ତାଙ୍କର ଜନ୍ମ । ସମ୍ଭବତଃ ୧୮୯୫ ବା ୯୬ ହୋଇପାରେ । ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଡିହିଡ଼ି ନିକଟବର୍ତ୍ତୀ ସୋନା ପୋଖରୀ ଗ୍ରାମରେ ଏକ ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ତାଙ୍କର ଜନ୍ମ । ପିତା କ୍ଷେତ୍ରମୋହନ ଜଣେ ସଙ୍ଗୀତ ପ୍ରେମୀ ଓ ବିଶିଷ୍ଟ ଢୋଲକ ବାଦକ ଥିଲେ । ଏହାର ପ୍ରଭାବ କିଶୋର ମନମୋହନଙ୍କ ଉପରେ ପଡ଼ିଥିଲା । ତେଣୁ ସାଧାରଣ ଶିକ୍ଷା ମାଇନର ପର୍ଯ୍ୟନ୍ତ ଅଧ୍ୟୟନ ପରେ ସେ ସଙ୍ଗୀତ ଶିକ୍ଷା ପ୍ରତି ଆଗ୍ରହୀ ହେଲେ । ଓଡ଼ିଶୀ, ଚମ୍ପୂ, ଜଣାଣ ଓ ଛାନ୍ଦ ବୋଲିପାରିବା ସଙ୍ଗେ ସଙ୍ଗେ ତତ୍କାଳୀନ ବ୍ୟବହୃତ ତବଲା, ପଖାଓଜ, ଢୋଲକ, ହାରମୋନିୟମ ଓ ବେହେଲା ଆଦି ନାନା ବାଦ୍ୟଯନ୍ତ୍ର ଶିକ୍ଷା କରିବାକୁ ଲାଗିଲେ । କ୍ରମେ କ୍ରମେ ତାଙ୍କର ଖ୍ୟାତି ବ୍ୟାପିଗଲା ଓ ସେ ବିଭିନ୍ନ ଗ୍ରାମରେ ପ୍ରତିଷ୍ଠିତ ଯାତ୍ରା ଦଳରେ ଓସ୍ତାଦୀ କରିବାକୁ ଲାଗିଲେ ।

ଏହି ସମୟରେ ସେ କାନ୍ତକବି ଲକ୍ଷ୍ମୀକାନ୍ତ ସମ୍ପର୍କରେ ଆସି କାନ୍ତକବିଙ୍କ ଗ୍ରାମ ତାଳପଦାଠାରେ ଏକ ରାସପାର୍ଟି ଗଠନ କଲେ । ଏହି ରାସପାର୍ଟିରେ ସାବତଙ୍କ ପଟ୍ଟଶିଷ୍ୟ କିଶୋର ଜଗବନ୍ଧୁ ସାହୁ, ରାମଚନ୍ଦ୍ର ପଣ୍ଡା ଓ କୃପାସିନ୍ଧୁ ପ୍ରମୁଖ ଯୋଗ ଦେଇ ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହୋଇ ଦର୍ଶକମାନଙ୍କର ଚିତ୍ତ ବିନୋଦନ କରୁଥିଲେ । ପ୍ରାୟ ପାଞ୍ଚବର୍ଷ ପର୍ଯ୍ୟନ୍ତ ଏହି ରାସପାର୍ଟି ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ସମ୍ମୁଖରେ ନିଜର ସଙ୍ଗୀତ କଳା ପ୍ରଦର୍ଶନ କରି ପ୍ରଶଂସାର ପାତ୍ର ହୋଇଥିଲା ।

ଏହି ରାସପାର୍ଟିର ଅବସାନ ପରେ ମନମୋହନ ପୁନଶ୍ଚ ବିଭିନ୍ନ ଗ୍ରାମରେ ଯାତ୍ରାପାର୍ଟି ଗଠନ କରି ଜନସାଧାରଣଙ୍କୁ ଆମୋଦ ଦେବାକୁ ଲାଗିଲେ । ସାମନ୍ତରାୟପୁର ଓ ପୀରହାଟଠାରେ ତାଙ୍କର ଦୁଇଟି ପ୍ରସିଦ୍ଧ ଯାତ୍ରାପାର୍ଟି ପରିଚାଳନା କରୁଥିବା ସଙ୍ଗେ ସଙ୍ଗେ, ସଙ୍ଗୀତ ପ୍ରେମୀ ଧନୀ ତଥା ଜମିଦାରଙ୍କ ଉଆସମାନଙ୍କରେ ଅନୁଷ୍ଠିତ ସଙ୍ଗୀତ ଆସରମାନଙ୍କରେ ସେ ଯୋଗ ଦେଉ ଥିଲେ ଏବଂ ସେଠାରେ ତାଙ୍କୁ ବହୁ ପ୍ରଶଂସା ମିଳିଥିଲା ।

ତାଙ୍କର ସଙ୍ଗୀତ ପରିବେଷଣରେ ମୁଗ୍ଧ ହୋଇ ସ୍ଥାନୀୟ ଜମିଦାର ପୂର୍ଣ୍ଣଚନ୍ଦ୍ର ଦାସ ତାଙ୍କୁ ସଙ୍ଗରେ ନିଜର ବ୍ୟବସାୟ ସ୍ଥଳୀ କଲିକତାକୁ ନେଇଗଲେ ଓ ସେଠାରେ ତାଙ୍କର ଅଧିକ ସଙ୍ଗୀତ ଶିକ୍ଷାର ବ୍ୟବସ୍ଥା କରିଦେଲେ । ପ୍ରକାଶ ଥାଉକି ପୂର୍ଣ୍ଣଚନ୍ଦ୍ର ଦାସଙ୍କ ସାନଭାଇ ପ୍ରହ୍ଲାଦ ବାବୁ ମଧ୍ୟ ନିଜେ ଜଣେ ସଙ୍ଗୀତ ସାଧକ ଥିଲେ । ମନମୋହନ କଲିକତାରେ ବହୁ ଉଚ୍ଚକୋଟୀର ସଙ୍ଗୀତଜ୍ଞଙ୍କଠାରୁ ସଙ୍ଗୀତ ଶିକ୍ଷା କଲେ ଓ ସେମାନଙ୍କ ମଧ୍ୟରେ ବିଶିଷ୍ଟ ଟପ୍ପା ଗାୟକ ସାତକଡ଼ି ମାଲାଙ୍କର ଅନ୍ୟତମ । ଏହି ସମୟରେ ପୂର୍ଣ୍ଣଚନ୍ଦ୍ର ଦାସଙ୍କ ବାସଭବନରେ ସଙ୍ଗୀତ ଆସରମାନ ଅନୁଷ୍ଠିତ ହେଉଥିଲା ଓ ବହୁ ସଙ୍ଗୀତଜ୍ଞ ଏଥିରେ ଅଂଶ ଗ୍ରହଣ କରୁଥିଲେ । ମନମୋହନଙ୍କ ସଙ୍ଗୀତ ପରିବେଷଣ ଏଠାରେ ବହୁ ପ୍ରଶଂସିତ ହେଉଥିଲା । କଲିକତାଠାରେ ଅନୁଷ୍ଠିତ ସର୍ବଭାରତୀୟ ତଥା ସମଗ୍ର ବଙ୍ଗୀୟ ସଙ୍ଗୀତ ସମ୍ମେଳନମାନଙ୍କରେ ଅନୁଷ୍ଠିତ ସଙ୍ଗୀତ ପ୍ରତିଯୋଗିତାରେ ଯୋଗ ଦେଇ ସେ ପୁରସ୍କାର ପ୍ରାପ୍ତ ହୋଇଥିଲେ ଓ ତାଙ୍କର ପ୍ରିୟ ଶିଷ୍ୟ ଜଗବନ୍ଧୁ ସାହୁ ମଧ୍ୟ ଏହି ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଲାଭ କରିଥିଲେ (କୀର୍ତ୍ତନରେ) । ପରବର୍ତ୍ତୀ କାଳରେ ମନମୋହନ ଏଠାକାର ସର୍ବଭାରତୀୟ ସଙ୍ଗୀତ ପ୍ରତିଯୋଗିତାରେ ପରୀକ୍ଷକ ଭାବରେ ମଧ୍ୟ ନିଯୁକ୍ତି ହେବାର ଯୋଗ୍ୟତା ଅର୍ଜନ କରିଥିଲେ ।

ବଡ଼ ବିସ୍ମୟର କଥା ମନମୋହନ ଏକଧାରାରେ ଜଣେ ବିଶିଷ୍ଟ ଗାୟକ, ତବଲା, ଢୋଲକ ଓ ପଖାଓଜ ବାଦକ ହେବା ସଙ୍ଗେ ସଙ୍ଗେ, ବେହେଲା, ଏସରାଜ, ସେତାର ଓ ସୁରବାହାର ଆଦି ଯନ୍ତ୍ର ସଙ୍ଗୀତରେ ନିପୁଣ ଥିଲେ । ବହୁ ଯନ୍ତ୍ରରେ ନିପୁଣ କଳାକାର କ୍ୱଚିତ୍ ଦେଖାଯାନ୍ତି ।

ଗୀତଂ ବାଦ୍ୟଂ ଚ ନୃତ୍ୟଂ ଚ ତ୍ରୟଂ ସଙ୍ଗୀତ ମୁଚ୍ୟତେ ତେଣୁ ମନମୋହନ ନୃତ୍ୟବିଦ୍ୟାରେ ମଧ୍ୟ ପାରଙ୍ଗମ ଥିଲେ । ନିଜର କନ୍ୟା ଶାନ୍ତିଲତାଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷା ଦାନ କରି ଭାରତର ବିଭିନ୍ନ ସ୍ଥାନରେ ବିଶେଷତଃ ଲକ୍ଷ୍ନୌପରି ଏକ ନୃତ୍ୟ ପ୍ରସିଦ୍ଧ ସହରରେ ତାହା ପ୍ରଦର୍ଶନ କରାଇ ବହୁ ପ୍ରଶଂସିତ ହୋଇଥିଲେ । କହିବା ବାହୁଲ୍ୟ ଯେ ଓଡ଼ିଶୀ ନୃତ୍ୟକୁ ଭାରତ ଦରବାରରେ ପ୍ରଦର୍ଶନ କରାଇବାରେ ସେ ଥିଲେ ପ୍ରଥମ ।

୧୯୩୯-୪୦ ମସିହା ବେଳକୁ ସେ ପୁଣି ଓଡ଼ିଶା ଫେରି ଆସିଲେ । ଏଠାରେ ଆନୁଷ୍ଠାନିକ ହିନ୍ଦୁସ୍ଥାନୀ ସଙ୍ଗୀତ ଶିକ୍ଷାର ଅଭାବ ଉପଲବ୍ଧି କରି ୧୯୪୧ ମସିହାରେ ଭଦ୍ରକ ହାଇସ୍କୁଲରେ ଖୋଲା ଯାଇଥିବା ସଙ୍ଗୀତ ଅନୁଷ୍ଠାନରେ ସେ ଜଗବନ୍ଧୁ ସାହୁଙ୍କ ସହିତ ଯୋଗ ଦେଲେ । କିନ୍ତୁ ଏଠାରେ ମାତ୍ର ତିନି, ଚାରିମାସ ଶିକ୍ଷକତା କରିବା ପରେ ଏଠାକାର ଦାୟିତ୍ୱ ଜଗବନ୍ଧୁଙ୍କଠାରେ ଅର୍ପଣ କରି ସେ ବାଲେଶ୍ୱର ଚାଲିଗଲେ ଓ ସେଠାରେ ମିସନ୍ ଗାର୍ଲ ସ୍କୁଲରେ ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ଏକ ସଙ୍ଗୀତ ଅନୁଷ୍ଠାନ

ଆରମ୍ଭ କରି ସଙ୍ଗୀତ ଶିକ୍ଷା ଦେବାକୁ ଲାଗିଲେ । ବାଲେଶ୍ୱରରେ ଥିବା ବର୍ତ୍ତମାନ ବହୁ ପ୍ରତିଷ୍ଠିତ ସଙ୍ଗୀତଜ୍ଞ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହି ସମୟରେ ବହୁ ସଙ୍ଗୀତ ସମ୍ମିଳନୀରେ ସଙ୍ଗୀତ ପରିବେଷଣ କରି ସେ ସଙ୍ଗୀତାଚାର୍ଯ୍ୟ ଆଦି ବହୁ ଉପାଧି ଲାଭ କରିଥିଲେ ।

ବାଲେଶ୍ୱରରେ ଅବସ୍ଥାନ ସମୟରେ ତାଙ୍କର ସ୍ୱାସ୍ଥ୍ୟର ଅବନତି ଘଟିଲା ଓ ସେ ଯକ୍ଷ୍ମାରୋଗରେ ପୀଡ଼ିତ ହେଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ନିଜ ଗ୍ରାମକୁ ଫେରି ଆସିଲେ ଓ ଏଠାରେ ୧୯୪୮ରେ ତାଙ୍କର ତିରୋଧାନ ହେଲା ।

ଏହି ଅବସରରେ ସ୍ୱର୍ଗତ ସାବତଙ୍କର କେତେକ ବିଶିଷ୍ଟ ଗୁଣ ଆଲୋଚନା କରିବା ଆବଶ୍ୟକ ମନେ ହୁଏ । ଜଣେ ଶିକ୍ଷକ ଭାବରେ ସେ ଅତି କଠୋର ଓ ନିଷ୍ଠୁର ମଧ୍ୟ ଥିଲେ । ସଙ୍ଗୀତ ଶିକ୍ଷାରେ ତ୍ରୁଟି ପରିଲକ୍ଷିତ ହେଲେ ସେ ଛାତ୍ରଙ୍କୁ କଠିନ ଦଣ୍ଡ ଦେଉଥିଲେ । ନିଜର ଛାତ୍ରଙ୍କୁ ଜଣେ ପ୍ରବୀଣ ସଙ୍ଗୀତଜ୍ଞରେ ପରିଣତ କରିବା ପାଇଁ ତାଙ୍କର ଉଦ୍ୟମ ପ୍ରଚେଷ୍ଟା ଓ ନିଷ୍ଠା ଅନସ୍ୱୀକାର୍ଯ୍ୟ । ସତ୍ୟ ନିଷ୍ଠା ଓ କର୍ତ୍ତବ୍ୟପରାୟଣତା ତାଙ୍କର ଅନ୍ୟ ଏକ ବିଶିଷ୍ଟ ଗୁଣ । ଏ ପ୍ରସଙ୍ଗରେ ଏକ ଘଟଣା ମୋର ମନେ ପଡ଼େ । ୧୯୪୪ରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା, ମେଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସଙ୍ଗୀତକୁ ଏକ ଇଚ୍ଛାଧୀନ ବିଷୟ ରୂପେ ଗ୍ରହଣ କରାଯାଇଥାଏ । ମୁଁ ଜଣେ ପରୀକ୍ଷାର୍ଥୀ ଭାବରେ ବାଲେଶ୍ୱର ଜିଲ୍ଲା ସ୍କୁଲ କେନ୍ଦ୍ରରେ ପରୀକ୍ଷା ଦେଇଥାଏ ସ୍ୱ:ସାବତଙ୍କ ଆଶୀର୍ବାଦ ନେବା ପାଇଁ ତାଙ୍କୁ ଦେଖା କରିବାକୁ ଯାଇଥାଏ । ସେ ମୋତେ ଦେଖା ଦେବାକୁ ନାସ୍ତି କଲେ ଓ ପରୀକ୍ଷା କେନ୍ଦ୍ରରେ ଦେଖା ହେବ ବୋଲି କହିଲେ । ପରୀକ୍ଷାରେ ଫଳାଫଳ ପ୍ରକାଶ ପାଇବା ପରେ ମୁଁ ଜାଣିଲି ମୋତେ ୧୦୦ରୁ ୪୯ ନମ୍ବର ମିଳିଛି । ଯଦି କେହି ହୋଇଥିଲେ ନିଜ ଅଞ୍ଚଳର ଲୋକ ବୋଲି ୧୦୦ରୁ ୬୦ କିମ୍ବା ୭୦ ନମ୍ବର ଦେଇପାରିଥାନ୍ତେ । ମାଙ୍‌ସାବତ ସେପରି ନ କରି ଯାହା ମୋର ପ୍ରାପ୍ୟ ତାହା ହିଁ ଦେଇଥିଲେ ।

୧୯୩୦–୪୦ ସ୍ୱାଧୀନତା ସଂଗ୍ରାମର ସମୟ । ଦେଶର ବିଭିନ୍ନ ସ୍ଥାନରେ ଆନ୍ଦୋଳନ, ସଭା ଓ ସମିତି । ସଭାରେ ପ୍ରାରମ୍ଭିକ ସଙ୍ଗୀତର ଗାନ ଦାୟିତ୍ୱ ସ୍ୱ:ସାବତଙ୍କର । କାନ୍ତକବି ଲକ୍ଷ୍ମୀକାନ୍ତ ଓ ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ଦେଶାତ୍ମବୋଧକ ସଙ୍ଗୀତ ଛାତ୍ରମାନଙ୍କୁ ଶିକ୍ଷା ଦେଇ ସେ ସଭାମାନଙ୍କରେ ବୋଲାଉଥିଲେ ଏବଂ ଏଥିରେ ଶ୍ରୋତାମାନେ ମୁଗ୍ଧ ଓ ଉଦ୍‌ବୋଧିତ ହେଉଥିଲେ । ଏଥିପାଇଁ ତାଙ୍କୁ ବ୍ରିଟିଶ୍ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିବାକୁ ହେଉଥିଲା । କିନ୍ତୁ ତଥାପି ସେ ସେଥିରୁ ନିବୃତ୍ତ ହୋଇ ନଥିଲେ । ଏହା ତାଙ୍କର ନିର୍ଭିକତା ଓ ଦେଶପ୍ରାଣତା ପ୍ରକାଶ କରେ ।

ସେ ଥିଲେ ବାଲେଶ୍ୱର ଜିଲ୍ଲାରେ ସଙ୍ଗୀତର ଗୁରୁ । ତାଙ୍କ ନାମରେ ଭଦ୍ରକ ସହରରେ ଏକ ସଙ୍ଗୀତ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଛି ଓ ଏହି ଅନୁଷ୍ଠାନ ସଙ୍ଗୀତ ଶିକ୍ଷା ପ୍ରଦାନ ଓ ପ୍ରସାରରେ ବ୍ରତୀ ହୋଇଛି । ଏହା ବ୍ୟତୀତ ତାଙ୍କ ଛାତ୍ରମାନେ ଏ ଅଞ୍ଚଳର ବିଭିନ୍ନ ସ୍ଥାନରେ ସଙ୍ଗୀତ ଅନୁଷ୍ଠାନମାନ ଚଳାଇ ଆସୁଛନ୍ତି । ସ୍ୱ: ମନମୋହନ ଏ ଅଞ୍ଚଳର ସଙ୍ଗୀତପ୍ରେମୀମାନଙ୍କପାଖରେ ଅବିସ୍ମରଣୀୟ ହୋଇ ରହିବେ ।

---

ବୁଦ୍ଧ ବିହାର, ଭଦ୍ରକ ।



ଗାଡ଼ନଗର ହଂସୁଆ ସେତୁ ଉଦ୍‌ଘାଟନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏକ ବିଶାଳ ଜନ ସମାବେଶରେ ଉଦ୍‌ବୋଧନ ଦେଉଛନ୍ତି (୨/୮) ।

# ଶାକ୍ତ ଓ ଶୈବ ଧର୍ମର ପ୍ରତୀକ : ଦଣ୍ଡନୃତ୍ୟ

* ଶ୍ରୀ ବିପିନ ମହାପାତ୍ର(ଉପଗୁପ୍ତ)

*ଭାରତୀୟ ସଂସ୍କୃତିରେ ଶାକ୍ତ ଓ ଶୈବ ଧର୍ମର ମହିମାନ୍ୱିତ ପରମ୍ପରା ଆଜି ମଧ୍ୟ ଅବ୍ୟାହତ । ଉକ୍ତ ଧର୍ମର ପାରସ୍ପରିକ ସମନ୍ୱୟତାରେ ହିଁ ସାମାଜିକ ଚେତନାର ପ୍ରତୀକ ସ୍ୱରୂପ ଧର୍ମ ବିଶ୍ୱାସ ନିଜ୍ୱ ସଭ୍ୟତାର କଳସ ଶିରରେ ପ୍ରତିଷ୍ଠିତ ହୋଇପାରିଛି । ତା' ନହେଲେ ଆଧୁନିକ ମଣିଷ ମାନସିକ ବିକାରଗ୍ରସ୍ତ ହେବା ପରେ ପରେ ଅବିଶ୍ୱାସ ଓ ନାସ୍ତିକବାଦର ପକ୍ଷପାତୀ ହୋଇ ସମାଜକୁ ବିପଥଗାମୀ କରାଇ ପାରନ୍ତା ।*

ଶିକ୍ଷା, ସଭ୍ୟତା, ଯୁଦ୍ଧ ଓ ବିଜ୍ଞାନର ପ୍ରଗତି ପଥରେ ଧର୍ମ ଓ ସଂସ୍କୃତି ବି ପାଦ ମିଳେଇ ଚାଲିଛି ନିଃସଙ୍କୋଚରେ । ତା'ର ଗୋପଥରେ ପ୍ରତିବନ୍ଧକ ସୃଷ୍ଟି କରିବା ପାଇଁ ଆଜିର ସଭ୍ୟ ମଣିଷ ଧର୍ମ ଭୀରୁତାର ଦ୍ୱାହି ଦେଇ ହୁଏତ ସାହସ କରିପାରୁନି ।

ସର୍ବ ଧର୍ମ ସମନ୍ୱୟର ପବିତ୍ର ପୀଠ ଭାରତବର୍ଷରେ ବାସ୍ତବିକ ଉତ୍କଳୀୟ ସଂସ୍କୃତିର ସ୍ୱାତନ୍ତ୍ର୍ୟ ଅନସ୍ୱୀକାର୍ଯ୍ୟ । ଶକ୍ତି ଓ ଶିବ ପୂଜାର ଇତିହାସରେ ଉତ୍କଳୀୟ ସଂସ୍କୃତିର ବିଶ୍ଳେଷ ଓ ବିଶ୍ଳେଷିତ ଅଧ୍ୟାୟ ଉଲ୍ଲେଖଯୋଗ୍ୟ । ନୃତ୍ୟ ଓ ସଙ୍ଗୀତ ମାଧ୍ୟମରେ ଏହା ଗଣଚେତନାର ଅତି ନିକଟବର୍ତ୍ତୀ ହୋଇପାରିଛି । ଉଦାହରଣ ସ୍ୱରୂପ ଦକ୍ଷିଣ ଓଡ଼ିଶାର ଦଣ୍ଡନୃତ୍ୟର ଶିବ ଓ ଶକ୍ତି ପୂଜାର ବୈଶିଷ୍ଟ୍ୟ ପରିଦୃଷ୍ଟ । ଗ୍ରୀଷ୍ମକାଳୀନ ପ୍ରକୃତିର ପବିତ୍ରତା ଓ ଉପାଦେୟତା ଉପଲବ୍ଧ କରିବାକୁ ଯାଇ ଭକ୍ତ ଯେପରି ଭଗବାନଙ୍କ ନିର୍ଦ୍ଦେଶକ୍ରମେ ଶାସ୍ତି ଗ୍ରହଣ କରୁଛି ଓ ଅନେକ କଠିନ ପରୀକ୍ଷାର ସମ୍ମୁଖୀନ ହେଉଛି, ତାହା କେବଳ ମଣିଷ ସମାଜର ହିତ ନିମନ୍ତେ । ଏହା ହିଁ ଓଡ଼ିଶାର ଦଣ୍ଡ ନୃତ୍ୟରେ ଶିବ ଓ ଶକ୍ତି ପୂଜାର ଗୁଣାତ୍ମକ ଦୃଷ୍ଟିଭଙ୍ଗୀ ।

ଆରଣ୍ୟକ ପରିବେଶରେ ଏକ ଅନୁନ୍ନତ ସମ୍ପ୍ରଦାୟର ସାମାଜିକ ଚଳଣି ଓ ରୀତି ଉପରେ ଆଧାରିତ ଦଣ୍ଡନୃତ୍ୟର କାହାଣୀ ଓ ସୃଷ୍ଟିର ସତ୍ତା ଶକ୍ତି ଓ ଶିବ ପୂଜାର ସାମଗ୍ରିକ ଦୃଷ୍ଟିଭଙ୍ଗୀ ଉପରେ ଏକାନ୍ତ ଭାବେ ପର୍ଯ୍ୟବସିତ । ବେଦରେ ବର୍ଣ୍ଣିତ ପୂଜା ପଦ୍ଧତିରେ ଶକ୍ତି ଯେପରି ଶିବ ବିନା ଅଗ୍ରାହ୍ୟ, ଅସତ୍ୟ, ଠିକ ସେହିପରି ଶିବର ସତ୍ତା ମଧ୍ୟ ଶକ୍ତି ବିନା ଅସମ୍ଭବ, ଅବାସ୍ତବ ବୋଲି ପ୍ରମାଣିତ ହୋଇପାରିଛି । ଏହି ସମ୍ପର୍କରେ ଗଭୀର ଭାବେ ଅନୁଧ୍ୟାନ କଲେ ଜଣାଯାଏ ଯେ, ଆର୍ଯ୍ୟ ଓ ଅନାର୍ଯ୍ୟର ବ୍ରତ ଉପାସନାରେ ସ୍ଥାନ ପାଇଥିଲା ମାତୃପୂଜା ଓ ନାଗପୂଜା, ଯାହାକି ଜାତି, ଧର୍ମ ନିର୍ବିଶେଷରେ ମାନବ ସମାଜର ଦିଗ୍‌ଦର୍ଶକ ହୋଇ ଆଧ୍ୟାତ୍ମିକତାର ମୂଳ ଉତ୍ସ ହୋଇପାରିଛି । ଲୋକନାଟ୍ୟର ଶୈଳୀ ନେଇ ପ୍ରସ୍ତୁତ ଦଣ୍ଡନୃତ୍ୟ ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ମହାବିଷୁବ ସଂକ୍ରାନ୍ତିର ଠିକ୍ ତେର ଦିନ କିମ୍ବା ଏକୋଇଶ ଦିନ ପୂର୍ବରୁ ଆରମ୍ଭହୁଏ ପାରମ୍ପରିକ ରୀତିରେ ଦଣ୍ଡଯାତ୍ରା । ମନସ୍କାମନା ପୂର୍ଣ୍ଣ ହେବାର ଅଭିଳାଷ ନେଇ ଯେଉଁମାନେ ଦଣ୍ଡନୃତ୍ୟରେ ଯୋଗଦାନ କରନ୍ତି, ସେମାନଙ୍କୁ 'ଭୋକ୍ତା' କୁହାଯାଏ । ବିଧିମତେ ତେର କିମ୍ବା ଏକୋଇଶ ଜଣ ଭୋକ୍ତାଙ୍କୁ ନେଇ ଦଣ୍ଡନୃତ୍ୟ ପରିଚାଳିତ ହେବା ପରିବର୍ତ୍ତେ ତଦୁର୍ଦ୍ଧ୍ୱ ଭୋକ୍ତାମାନଙ୍କୁ ନେଇ ଗୋଟିଏ ନୃତ୍ୟଦଳ ଗଠିତ ହୋଇଥାଏ । ଉଦ୍‌ଯାପନ ଦିବସ ଅର୍ଥାତ୍ ମେରୁ ଯାତ୍ରାରେ ଯେଉଁ ଭୋକ୍ତା ଜଣକ ମାଡ଼ କେତେ ଟୋପା ରକ୍ତ ଦାନ କରି ମା' କାଳୀଙ୍କ ମୂଳ ପୀଠରେ ମେରୁ ଯାତ୍ରାର ପରିସମାପ୍ତି ଘଟାଏ, ତାଙ୍କୁ କୁହାଯାଏ 'ପାଟଭୋକ୍ତା' ।

ଅନ୍ୟାନ୍ୟ ଭୋକ୍ତା ଅପେକ୍ଷା ପାଟଭୋକ୍ତା ହିଁ ମେରୁଯାତ୍ରା ପର୍ଯ୍ୟନ୍ତ ଶିବ ଓ ଶକ୍ତିର ପୂଜା କାର୍ଯ୍ୟ ଅଧିକ ତୁଲାଇଥାଏ । ପ୍ରତ୍ୟେକ ଭୋକ୍ତା ଗେରୁଆ ବସ୍ତ୍ର ପରିଧାନ କରନ୍ତି । କି ବ୍ରାହ୍ମଣ, କି ଶୂଦ୍ର ସମସ୍ତଙ୍କ କଣ୍ଠରେ ଯଜ୍ଞୋପବୀତ ସ୍ଥାନ ପାଇଥାଏ । ସେମାନଙ୍କ ସକାଶେ ମେରୁଯାତ୍ରା ପର୍ଯ୍ୟନ୍ତ ଦୈନିକ ଖାଦ୍ୟପେୟ ସହିତ କେତୋଟି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷରେ କଟକଣା ହୋଇଥାଏ । ଅର୍ଥାତ୍ ତୈଳ ମର୍ଦ୍ଦନ ଏକାଧିକବାର ଅନ୍ନ ଭୋଜନ ଇତ୍ୟାଦି ଇତ୍ୟାଦି ।

ଦଣ୍ଡଯାତ୍ରାରେ ଢୋଲ, କରତାଳ, ଘଣ୍ଟ, ନାଲି ପତାକା, ମୟୂର ପୁଚ୍ଛ, ପିତଳ ନାଗ ଓ ମା' କାଳୀଙ୍କ ଚିତ୍ରପଟ, ଶାଳମୋଡ଼ା ପ୍ରଭୃତି ଭୋକ୍ତା ମାତାଙ୍କ ବ୍ୟବହାର୍ଯ୍ୟ ବସ୍ତୁ ହୋଇଥାଏ । କେବଳ ରାତିରେ ନିର୍ଦ୍ଧାରିତ ସ୍ଥାନରେ ଦଣ୍ଡନୃତ୍ୟ ପରିବେଷିତ ହୋଇଥାଏ । ତା' ପୂର୍ବରୁ ଗ୍ରୀଷ୍ମ ମଧ୍ୟାହ୍ନରେ ପ୍ରଚଣ୍ଡ ରୌଦ୍ରତାପକୁ ତୁଚ୍ଛକରି ଭୋକ୍ତା ବା ଦଣ୍ଡୁଆମାନେ ଖୋଲା ଆକାଶ ତଳେ ଦୁଇଘଣ୍ଟା ଧରି ଧୂଳିଦଣ୍ଡ ପାଳନ କରନ୍ତି । ସେତେବେଳେ ସେମାନେ 'ଋଷିପୁତ୍ର' ବୋଲି ସମ୍ବୋଧିତ ହୁଅନ୍ତି । ପୃଥିବୀର ସର୍ବାଙ୍ଗୀନ ଉନ୍ନତି ସାଧନ

ନିମନ୍ତେ ଧୂଳିଦଣ୍ଡ ବେଳେ ଭୋଗତାମାନେ ଶିବ ଓ ଶକ୍ତିଙ୍କୁ ନିବେଦନ କରନ୍ତି, ଯାହାକି ସେମାନଙ୍କ ସମର୍ପଣ ବିନିମୟରେ ତ୍ୟାଗ ଓ ଆଦର୍ଶର ଦୃଷ୍ଟାନ୍ତ ମାତ୍ର । ତାପରେ ଅର୍ଥାତ୍ ସୂର୍ଯ୍ୟାସ୍ତ ପୂର୍ବରୁ ଭୋଗତାମାନେ ପୋଖରୀ ଜଳରେ ସଂସ୍କାର ହୋଇ "ପାଣିଦଣ୍ଡ" ପାଳନ କରନ୍ତି । ସେତିକିବେଳେ ସେମାନେ ଜଳ ଓ ଭଗବାନ ସୂର୍ଯ୍ୟଙ୍କୁ ଦାଦିକତାର ସହ ସ୍ତବ କରନ୍ତି ।

ଠିକ୍ ମଧ୍ୟରାତ୍ରି ପରେ ଦଣ୍ଡନୃତ୍ୟ ପରିବେଷିତ ହୁଏ । ନୃତ୍ୟ ଆରମ୍ଭ ହେବା ଆଗରୁ ପ୍ରଚୁର ଝୁଣାଧୂଆଁ ପ୍ରୟୋଗ କରି ଭୋଗତାମାନେ ମା' କାଳୀଙ୍କୁ ଉନ୍ମାଦ ତଥା ମାତାଲ କରି ଦିଅନ୍ତି ବୋଲି କଥିତ ଅଛି । ଫଳରେ କାଳୀଙ୍କ ବିଗ୍ରହ ବହନ କରି ନୃତ୍ୟ କରୁଥିବା ପାଟଭୋଗତା ମତ୍ତହୋଇ ଢୋଲ ଏବଂ କରତାଳ ଶବ୍ଦରେ ଉଦ୍ଦାମ ନୃତ୍ୟ କରେ । ପରେ ପରେ ସେ ଅଣାୟତ୍ତ ହୋଇଯାଏ, ତାକୁ ଆୟତ୍ତ କରନ୍ତି ଅନ୍ୟାନ୍ୟ ଭୋଗତାମାନେ । ତିନି, ଚାରି ଘଣ୍ଟା ପରେ ତା'ର ହୋସ୍ ଆସେ । ଏହାକୁ ହିଁ ବୁଝାଯାଏ ମା' କାଳୀଙ୍କ ସୁପ୍ରସନ୍ନ ହେବା ପର୍ଯ୍ୟାୟ ।

ପାର୍ବତ୍ୟ ଅଞ୍ଚଳରେ ଫାଶ ପକାଇ ପକ୍ଷୀ ଶିକାର କରିବା ହେଲା ଦଣ୍ଡନୃତ୍ୟର ନାୟକ ଚଢ଼େୟାର ଦୈନନ୍ଦିନ କୌଳିକ ବୃତ୍ତି । କିନ୍ତୁ ଦୁର୍ଭାଗ୍ୟବଶତଃ ଦିନେ ଶିକାର କରୁଥିବାବେଳେ ତା'ର ସର୍ପାଘାତରେ ମୃତ୍ୟୁ ହୋଇଯାଏ । ନାୟିକା ଚଢ଼େୟାଣୀ ସ୍ୱୟଂ ତାଙ୍କ ପତି ଚଢ଼େୟା ବିଚ୍ଛେଦରେ ଖୁବ୍ କ୍ରନ୍ଦନ କରନ୍ତି । କ୍ରନ୍ଦନ ମାଧ୍ୟମରେ ସେ ଆକୁଳ ବ୍ୟାକୁଳ ହୋଇ ଶିବ ଓ ଦୁର୍ଗାଙ୍କୁ ପ୍ରାର୍ଥନା କରନ୍ତି । ସ୍ୱାମୀ ଚଢ଼େୟାର ଜୀବନ୍ୟାସ ସକାଶେ ତାଙ୍କ ଭକ୍ତି ରସାପ୍ଲୁତ ପ୍ରାର୍ଥନାରେ ଶିବ ଓ ଦୁର୍ଗା ଆବିର୍ଭାବ ହୁଅନ୍ତି ଏବଂ ଚଢ଼େୟାକୁ ପୁନର୍ଜୀବନ ଦିଅନ୍ତି । ଏହା ହିଁ ହେଲା ଗଣନାଟ୍ୟ ପରମ୍ପରା ଅନ୍ତର୍ଗତ ଦଣ୍ଡନୃତ୍ୟ କାହାଣୀର ମୁଖ୍ୟ ଉପଜୀବ୍ୟ ବସ୍ତୁ । ଏତଦ୍ ବ୍ୟତୀତ ସାପ ସାପୁଆଣୀ, ରାଜକୁଣୀ, ରଜକ, ରଜକୀ ପ୍ରଭୃତି ଗୌଣ ଚରିତ୍ର ମଧ୍ୟ ନାୟକ ଚଢ଼େୟାର ମୃତ୍ୟୁ ରହସ୍ୟ ଉଦ୍‌ଘାଟନ କରିବା ପାଇଁ ଆସି ସ୍ୱ ସ୍ୱ କର୍ତ୍ତବ୍ୟ ସମାପନ କରିଥାନ୍ତି ନାଟକରେ ।

ନୃତ୍ୟଦଣ୍ଡର ଉପଯୁକ୍ତ ବିଷୟ ବିନ୍ୟାସରୁ ମନେହୁଏ, ମାନବୀୟ ସୃଷ୍ଟିର ଆରମ୍ଭରୁ ଶାକ୍ତ ଓ ଶୈବ ଧର୍ମ ତା'ର ପ୍ରଭାବ ବିସ୍ତାର କରିପାରିଥିଲା । ତା' ନହେଲେ ଦଣ୍ଡନୃତ୍ୟର ନାୟିକା ଚଢ଼େୟାଣୀର ଭକ୍ତିଭାବ ଓ ପତିବ୍ରତା କଦାପି ସଂହାରକର୍ତ୍ତା ଶିବ ଓ ଆଦ୍ୟାଶକ୍ତି ପାର୍ବତୀଙ୍କ ଦ୍ୱାରା ଅନୁଗ୍ରହୀତ ହୋଇ ମୃତ ଚଢ଼େୟାର ପୁନର୍ଜୀବନ ପାଇନଥାନ୍ତା । ଅତଏବ ବର୍ଷକୁ ଥରେ ପାରମ୍ପରିକ ଗଣନାଟ୍ୟର ଶୈଳୀ ନେଇ ପରିବେଷିତ ହେଉଥିବା ଭକ୍ତି ଓ ରସାପ୍ଲୁତ ଦଣ୍ଡନୃତ୍ୟରେ ହିଁ ସ୍ଥାନ ପାଇଛି ଭକ୍ତିଭାବ, ଆଦର୍ଶ, ତ୍ୟାଗ, ଶାନ୍ତି, ବିନିମୟରେ ବର୍ଣ୍ଣବୈଷମ୍ୟର ବିଲୋପ ସାଧନ ଏବଂ ଏକ ପୃଥକ୍‌ଧର୍ମୀ ନାଟକୀୟ କାହାଣୀ, ଯାହାକି ସାମ୍ପ୍ରତିକ ଯୁଗ ମଣିଷର ଏକାନ୍ତ ଅନ୍ତରଙ୍ଗତାର ଉଜ୍ଜ୍ୱଳ ପ୍ରତୀକ ବୋଲି ଧରି ନିଆଯାଇପାରେ ।

ଏହି ଦଣ୍ଡନୃତ୍ୟର ବିଧିବିଧାନ ଉତ୍କଳୀୟ ସଂସ୍କୃତିର ଅନ୍ତର୍ଭୁକ୍ତ ହେଲେ ବି ପଶ୍ଚିମ ଓଡ଼ିଶା ନୃତ୍ୟ ପରିବେଷଣ ଶୈଳୀ ଦକ୍ଷିଣ ଓଡ଼ିଶାର ଶୈଳୀ ଅପେକ୍ଷା କିଞ୍ଚିତ୍ ପୃଥକ୍ ହୋଇଥାଏ । ତେବେ ପ୍ରଚୁର ଅର୍ଥ ବ୍ୟୟ କରି ମାନସିକ କରିଥିବା ଭକ୍ତଗଣ ଦଣ୍ଡନୃତ୍ୟ ପରିବେଷଣ ସକାଶେ ଟିକିଲେମାତ୍ର କୁଣ୍ଠାବୋଧ କରୁନାହାନ୍ତି । ଆଧ୍ୟାତ୍ମ ଦାନ ଇତିହାସରେ ଶୈବ ଓ ଶାକ୍ତ ଧର୍ମର ତାତ୍ପର୍ଯ୍ୟପୂର୍ଣ୍ଣ ଭାବାବେଗ ଓ ମହିମା ଆଧୁନିକ ମଣିଷକୁ ତା'ର ଅନୁଗାମୀ କରିପାରୁଛି, କହିଲେ ଅତ୍ୟୁକ୍ତି ହେବନାହିଁ ।

---

ରେଭିନ୍ୟୁ ସେକ୍‌ସନ୍,
ଗଞ୍ଜାମ କିଲ୍ଲଟରୀ ।





ରାଜନଗର ହସ୍ତୁଆ ସେତୁ ଉଦ୍‌ଘାଟନ ଅବସରରେ ପୂର୍ତ୍ତ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କ ଉଦ୍‌ବୋଧନ ।

# ସମ୍ବାଦ ପରିକ୍ରମା

## ରାଜ୍ୟପାଳ ଶ୍ରୀ ରେଡ୍‌ଡ଼ୀଙ୍କୁ 'ଜାତୀୟ ବୁଝାମଣା–ସଂହତି' ପୁରସ୍କାର ପ୍ରଦାନ

ମଣିଷ ମଣିଷ ମଧ୍ୟରେ ସ୍ନେହ, ସୌହାର୍ଦ୍ଦ୍ୟ ଓ ପାରସ୍ପରିକ ବୁଝାମଣା ପ୍ରତିଷ୍ଠା ହୋଇନପାରିଲେ ମହାନ ସର୍ବଭାରତୀୟ ସଂସ୍କୃତି ବିଶ୍ୱକୁ ଯେଉଁ 'ବସୁଧୈବ କୁଟୁମ୍ବକମ୍' ମହାମନ୍ତ୍ରରେ ଦିକ୍ଷିତ କରିବାକୁ ପ୍ରୟାସ କରିଆସିଛି, ତାହାର ରୂପାୟନ ସମ୍ଭବ ହୋଇ ପାରିବ ନାହିଁ ବୋଲି ଓଡ଼ିଶା ଓ ପଶ୍ଚିମ ବଙ୍ଗର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍‌ଡ଼ୀ ମତ ପ୍ରକାଶ କରିଛନ୍ତି ।

ରାଜ୍ୟପାଳ ଶ୍ରୀ ରେଡ୍‌ଡ଼ୀ ଦିଲ୍ଲୀର କନ୍‌ଷ୍ଟିଟିଉସନ୍ କ୍ଲବଠାରେ ୟୁନିଟି ଇଣ୍ଟରନ୍ୟାସନାଲ ଫାଉଣ୍ଡେସନ ତରଫରୁ ସଂହତି ପୁରସ୍କାର ପ୍ରଦାନ ନିମନ୍ତେ ଆୟୋଜିତ ଏକ ବର୍ଣ୍ଣାଢ୍ୟ ସମାରୋହରେ ଯୋଗଦାନ କରି ଭାରତର ପୂର୍ବତନ ରାଷ୍ଟ୍ରପତି ଶ୍ରୀ ଜ୍ଞାନୀ ଜୈଲ ସିଂହଙ୍କ ହସ୍ତରୁ 'ଜାତୀୟ ବୁଝାମଣା–ସଂହତି ଟ୍ରଫି' ଗ୍ରହଣ କରିଥିଲେ ।

ଶ୍ରୀ ରେଡ୍‌ଡ଼ୀ ସମ୍ମାନ ଫଳକ ଗ୍ରହଣ କରି କହିଥିଲେ ଯେ, ବିଶ୍ୱ ଜନସମାଜ ସାମ୍ପ୍ରତିକ ସଂକ୍ରମଣକାଳ ଦେଇ ଗତିକରି ଏକବିଂଶ ଶତାବ୍ଦୀର ଦ୍ୱାରଦେଶରେ ପଦାର୍ପଣ କରିବାକୁ ଆଗେଇ ଯାଉଥିବା ବେଳେ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ଶାଶ୍ୱତ, ସୁନ୍ଦର ଓ ସମୃଦ୍ଧ ବିଶ୍ୱ ଗଠନ କରିବା ପାଇଁ ଆନ୍ତରିକ ସଦ୍‌ଭାବନା, ସମ୍ପ୍ରତି ବହୁ ପରସ୍ପର ମତବାଦ ଓ ଚିନ୍ତାପ୍ରତି ସହନଶୀଳତାକୁ ଆହୁରି ଶକ୍ତିଶାଳୀ କରିବାର ଆନ୍ତରିକ ପ୍ରୟାସ ବିନା ଅନ୍ୟଗତି ନାହିଁ ।

ଅଧୁନା ସମଗ୍ର ବିଶ୍ୱର ମାନବ ସମାଜ ଅନେକ ନିକଟବର୍ତ୍ତୀ ଓ କ୍ଷୁଦ୍ର ପରିସରଭୁକ୍ତ ହୋଇଯାଇଥିବା ବେଳେ ଆମ୍ଭେମାନେ ପରସ୍ପର ପ୍ରତି ବିଶେଷ ନିର୍ଭରଶୀଳ ହୋଇ ପଡ଼ିଛୁ ବୋଲି ମତପ୍ରକାଶ କରି ଶ୍ରୀ ରେଡ୍‌ଡ଼ୀ କହିଥିଲେ ଯେ, ବିଶ୍ୱର ବିଭିନ୍ନ ଦେଶମାନ ଏହି ସଦ୍‌ଭାବନା, ସହଯୋଗ, ସଂହତି ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ପ୍ରୟାସ ଆରମ୍ଭ କରିଥିବା ବାସ୍ତବିକ ଆଶାଜନକ ଓ ସୌଭାଗ୍ୟର ବିଷୟ ।

ଏହି ପରିସ୍ଥିତିରେ ବେସରକାରୀ ଅନୁଷ୍ଠାନମାନେ ବିଭିନ୍ନ ଦେଶର ଜନସମାଜକୁ ବନ୍ଧୁତ୍ୱ ଓ ସଦ୍‌ଭାବନା ଦ୍ୱାରା ନିବିଡ଼ ବନ୍ଧନରେ ଆବଦ୍ଧ କରିବାକୁ ଆଗେଇ ଆସନ୍ତୁ ବୋଲି ଶ୍ରୀ ରେଡ୍‌ଡ଼ୀ ପରାମର୍ଶ ଦେଇଥିଲେ । 'ୟୁନିଟି ଇଣ୍ଟରନ୍ୟାସନାଲ ଫାଉଣ୍ଡେସନ୍'ର ଏ ଦିଗରେ ସମୟୋପଯୋଗୀ ପଦକ୍ଷେପମାନ ବାସ୍ତବିକ ପ୍ରଶଂସନୀୟ ବୋଲି ରାଜ୍ୟପାଳ କହିଥିଲେ ।

ଏହି ସମାରୋହରେ ଆର୍ଜେନ୍ଟିନାର ମହାମାନ୍ୟ ରାଷ୍ଟ୍ରଦୂତ ଶ୍ରୀ ଭିକ୍ଟର ଇ: ବେଗଙ୍କୁ ମଧ୍ୟ ଫାଉଣ୍ଡେସନ ତରଫରୁ 'ଆମ୍ବାସଡ଼ର ଅଫ୍ ଦି ଇଅର' ବା 'ଏବର୍ଷର ରାଷ୍ଟ୍ରଦୂତ' ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ଏହି ସମାରୋହରେ ବହୁ ବୁଦ୍ଧିଜୀବୀ, କେନ୍ଦ୍ର ରାଷ୍ଟ୍ର ମନ୍ତ୍ରୀ, ପୂର୍ବତନ କେନ୍ଦ୍ର ମନ୍ତ୍ରୀ, ସମ୍ପାଦିକମାନଙ୍କ ସହିତ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଯୋଗ ଦେଇଥିଲେ ।

## ସଚିବାଳୟଠାରେ କେନ୍ଦ୍ରୀୟ କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର ଉଦ୍‌ଘାଟିତ

ସମ୍ପ୍ରତି ସଚିବାଳୟ ସମ୍ପ୍ରସାରିତ ଗୃହର ଉତ୍ତର ପାର୍ଶ୍ୱ ନିମ୍ନ ମହଲାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସଚିବାଳୟ କେନ୍ଦ୍ରୀୟ କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର ଉଦ୍‌ଘାଟନ କରିଛନ୍ତି । ଏହି କେନ୍ଦ୍ରଟି ରାଜ୍ୟ ସରକାରଙ୍କ ବିଜ୍ଞାନ ଓ ବୈଷୟିକ ବିଭାଗ ଦ୍ୱାରା ନିର୍ମିତ ହୋଇଛି ଏବଂ ରାଜ୍ୟ ସରକାରଙ୍କ ମୁଖ୍ୟ କମ୍ପ୍ୟୁଟର ସଂସ୍ଥା "ଓଡ଼ିଶା କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ର" ଏଥିପାଇଁ ଆବଶ୍ୟକ ବୈଷୟିକ ତଥା ପରିଚାଳନାଗତ ସହାୟତା ପ୍ରଦାନ କରିଛନ୍ତି ।

ଏହି କମ୍ପ୍ୟୁଟର କେନ୍ଦ୍ରର ମୁଖ୍ୟ ଉଦ୍ଦେଶ୍ୟ ହେଲା– ପରିଚାଳନା ସହାୟକ ପଦ୍ଧତି ପାଇଁ ବୈଷୟିକ ତଥ୍ୟ, ତଥ୍ୟଭିତ୍ତିକ ଉନ୍ନତି ଓ ନିଷ୍ପତ୍ତିମୂଳକ ପଦ୍ଧତିର ଅଭିବୃଦ୍ଧି ଘଟାଇ କମ୍ପ୍ୟୁଟର ପଦ୍ଧତିରେ ସମାଧାନ ସୂତ୍ର ବାହାର କରିବା, ବିଭିନ୍ନ ତଥ୍ୟ ସଂଗ୍ରହ କରି ସେଗୁଡ଼ିକୁ କମଣ କରିବା ସଙ୍ଗେ ସଙ୍ଗେ ଆବଶ୍ୟକ ସମୟରେ ନିର୍ଭୁଲ ତଥ୍ୟ ପ୍ରଦାନ କରିବା ଏବଂ ବିଭିନ୍ନ ସରକାରୀ ବିଭାଗ ପାଇଁ ଆବଶ୍ୟକ ହେଉଥିବା ପରିଚାଳନାଗତ ତଥ୍ୟକୁ ଭିତ୍ତି କରି ତୁରନ୍ତ କମ୍ପ୍ୟୁଟରଭିତ୍ତିକ ନିଷ୍ପତ୍ତି ଯୋଗାଇ ଦେବା ।

ମୁଖ୍ୟମନ୍ତ୍ରୀ ତାଙ୍କର ଅଭିଭାଷଣରେ ଉଲ୍ଲେଖ କରିଥିଲେ ଯେ ସମଗ୍ର ବିଶ୍ୱ, ବିଶେଷ କରି ଜାପାନ୍, ଜର୍ମାନୀ, ଆମେରିକା ଭଳି ଦେଶଗୁଡ଼ିକ କମ୍ପ୍ୟୁଟର ବିଦ୍ୟାରେ ଉତ୍କର୍ଷତା ଲାଭ କରିଥିବା ବେଳେ ଆମ ଦେଶରେ ସେହି ପୁରୁଣା ପଦ୍ଧତିରେ କାର୍ଯ୍ୟସମ୍ପାଦନ, ଅତୀବ ଦୁଃଖର ବିଷୟ । ଶିକ୍ଷା, ଶିଳ୍ପ, ସ୍ୱାସ୍ଥ୍ୟ ଗ୍ରାମ୍ୟ ବିକାଶ ଓ ଅନ୍ୟାନ୍ୟ ବିଭାଗରେ କମ୍ପ୍ୟୁଟର ପଦ୍ଧତି ତୁରନ୍ତ ପ୍ରୟୋଗ କରାଯାଇ ସମ୍ପୃକ୍ତ ବିଭାଗର କାର୍ଯ୍ୟ ପ୍ରଣାଳୀକୁ ସରଳୀକୃତ କରିବା ସଙ୍ଗେ ସଙ୍ଗେ ସୀମିତ ସମୟ ମଧ୍ୟରେ ସଠିକ୍ ତଥ୍ୟ, ବିବରଣୀ ପ୍ରସ୍ତୁତ କରାଯିବା ଆବଶ୍ୟକ । ଏଥିପାଇଁ ବିଭିନ୍ନ ବିଭାଗର କର୍ମଚାରୀମାନଙ୍କୁ ଏହି କମ୍ପ୍ୟୁଟର ପ୍ରୟୋଗ କେନ୍ଦ୍ରରେ ତାଲିମ ଦିଆଯିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ସାରା ବିଶ୍ୱର ପ୍ରଶାସନ ସମ୍ପ୍ରତି ଇଲେକ୍ଟ୍ରୋନିକ୍ ଭିତ୍ତିକ ହୋଇଉଠୁଥିବା ବେଳେ ଆମେ ଏ ଦିଗରେ ପଛୁଆ ହୋଇ ରହିବା ଉଚିତ ନୁହେଁ ବୋଲି ସେ ମତବ୍ୟକ୍ତ କରିଥିଲେ । କେବଳ ସରକାରୀ ବିଭାଗ ନୁହେଁ, ରାଜ୍ୟର ବିଭିନ୍ନ କର୍ପୋରେସନ୍ ଓ ବଡ଼ ବଡ଼ ଶିଳ୍ପ ସଂସ୍ଥାରେ କମ୍ପ୍ୟୁଟର ପ୍ରୟୋଗର ଆବଶ୍ୟକତା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ଏବଂ ଏଥିପାଇଁ ବିଭାଗୀୟ ଶାସନ ସଚିବମାନଙ୍କୁ ପରାମର୍ଶ ଦେଇଥିଲେ ।

ଏହି ଉତ୍ସବରେ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ଦାସ ଯୋଗ ଦେଇ କମ୍ପ୍ୟୁଟର କେନ୍ଦ୍ରର ଆବଶ୍ୟକତା ଓ ଶାସନ ପରିଚାଳନା କ୍ଷେତ୍ରରେ ଏହାର ଉପାଦେୟତା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଉଦ୍‌ଘାଟନୀ ଉତ୍ସବରେ ପ୍ରାରମ୍ଭରେ ବିଭାଗୀୟ ଶାସନ ସଚିବ ଶ୍ରୀ ସୁବାସ ପାଣି କମ୍ପ୍ୟୁଟର ସହାୟକ କେନ୍ଦ୍ରର ଆବଶ୍ୟକତା ଓ ଉପାଦେୟତା ସମ୍ପର୍କରେ ସୂଚନା ଦେଇଥିଲେ । ଏହି କେନ୍ଦ୍ର ଏ କ୍ଷେତ୍ରରେ ଏକ ଅସ୍ମାରକ ବୋଲି ସୂଚନା ଦେବା ସଙ୍ଗେ ସଙ୍ଗେ ଏହାର ଭବିଷ୍ୟତ ବିକାଶ ଦିଗରେ ଶ୍ରୀ ପାଣି ବିଭିନ୍ନ ବିଭାଗର ସାହାଯ୍ୟ ସହଯୋଗ କାମନା କରିଥିଲେ ଏବଂ ଶେଷରେ ଉପସ୍ଥିତ ବରେଣ୍ୟ ଅତିଥିମାନଙ୍କୁ ଧନ୍ୟବାଦ ଅର୍ପଣ କରିଥିଲେ

ପରିଶେଷରେ କମ୍ପ୍ୟୁଟର ପଦ୍ଧତି ପ୍ରୟୋଗ ଦ୍ୱାରା କିଭଳି ବିଭିନ୍ନ ବିଭାଗର କର୍ମଚାରୀମାନଙ୍କ କାର୍ଯ୍ୟ ପଦ୍ଧତି, ଚାକିରୀ ସମ୍ପର୍କିତ ପୂର୍ଣ୍ଣାଙ୍ଗ ବିବରଣୀ, ଖାଲି ପଡ଼ିଥିବା ପଦବୀ ସଂଖ୍ୟା, ବେତନ ପଞ୍ଜିକାର ସରଳୀକୃତ ପ୍ରଣାଳୀ ଓ ଅନ୍ୟାନ୍ୟ ତଥ୍ୟଭିତ୍ତିକ ରିପୋର୍ଟ ସମ୍ପର୍କରେ କମ୍ପ୍ୟୁଟର ପ୍ରସ୍ତୁତ ବିବରଣୀର ପ୍ରଦର୍ଶନ କରାଯାଇଥିଲା ।

ଏହି ଉଦ୍‌ଘାଟନୀ ଉତ୍ସବରେ ଶକ୍ତି ମନ୍ତ୍ରୀ ଶ୍ରୀ କାଳନ୍ଦୀ ଚରଣ ବେହେରା ଓ ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ଚୈତନ୍ୟ ପ୍ରସାଦ ମାଝୀଙ୍କ ସମେତ ବିଭିନ୍ନ ବିଭାଗର ଶାସନ ସଚିବ ଏବଂ ଉଚ୍ଚ ପଦସ୍ଥ ଅଧିକାରୀମାନେ ଯୋଗ ଦେଇଥିଲେ ।

## ହୀରାକୁଦ ଆଇ.ଟି.ଆଇ. ଶିକ୍ଷାନୁଷ୍ଠାନକୁ ଦେଶର ପ୍ରଥମ ସ୍ୱୟଂଚାଳିତ ସଂସ୍ଥା ରୂପେ ମାନ୍ୟତା ପ୍ରଦାନ

ଗତ ଅଗଷ୍ଟ ୬ ତାରିଖ ସନ୍ଧ୍ୟାରେ ହୀରାକୁଦ ଆଇ.ଟି.ଆଇ. ଶିକ୍ଷାନୁଷ୍ଠାନର ୩୭ ତମ ବାର୍ଷିକ ଉତ୍ସବ ପାଳନ ଅବସରରେ ଏହି ଅନୁଷ୍ଠାନକୁ ସ୍ୱୟଂଚାଳିତ ସଂସ୍ଥା ରୂପେ ମାନ୍ୟତା ଦିଆଯାଇ। ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବେ ରାଜ୍ୟ ଶିଳ୍ପ ଓ ସଙ୍ଗଠିତ ଉଦ୍ୟୋଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝୀ ଯୋଗ ଦେଇ ଏହି ଶିକ୍ଷାନୁଷ୍ଠାନଟି ଭାରତର ପ୍ରଥମ ସ୍ୱୟଂ ଚାଳିତ ସଂସ୍ଥା ରୂପେ ଗୌରବ ଅର୍ଜନ କରିଥିବା ହେତୁ ସନ୍ତୋଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ରାଜ୍ୟରେ ଦ୍ରୁତ ଶିଳ୍ପ ପ୍ରସାର କ୍ଷେତ୍ରରେ ବୈଷୟିକ ତାଲିମପ୍ରାପ୍ତ, ବିଶେଷ କରି ଆଇ.ଟି.ଆଇ. ଶିକ୍ଷାନବୀଶଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ବୋଲି ମତବ୍ୟକ୍ତ କରିଥିଲେ। ନିକଟରେ ଆମ ରାଜ୍ୟର ଛଅଜଣ କୃତୀ ଆଇ.ଟି.ଆଇ. ଶିକ୍ଷାନବୀଶ ସେମାନଙ୍କର ଅଭୂତପୂର୍ବ କୃତିତ୍ୱ ଯୋଗୁଁ ରାଷ୍ଟ୍ରୀୟ ପଦକ ପାଇଛନ୍ତି ବୋଲି ସେ ସୂଚନା ଦେଇଥିଲେ ।

ପଶ୍ଚିମାଞ୍ଚଳ ରାଜସ୍ୱ କମିଶନର ତଥା ଉକ୍ତ ସ୍ୱୟଂଚାଳିତ ପରିଷଦର ସଭାପତି ଶ୍ରୀ ଶ୍ରୀନିବାସ ରଥଙ୍କ ପୌରୋହିତ୍ୟରେ ଅନୁଷ୍ଠିତ ଏହି ଉତ୍ସବରେ ସମ୍ମାନିତ ଅତିଥି ଭାବେ ଯୋଗଦେଇ ରାଜ୍ୟ ଶିଳ୍ପ ବିଭାଗ ଶାସନ ସଚିବ ଶ୍ରୀ ଆଇ.କେ.ଏସ୍. ସୁଖଜା କହିଲେ ଯେ ଏହା ଫଳରେ ଉକ୍ତ ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି କ୍ଷେତ୍ରରେ ଯଥାର୍ଥରେ ପଥ ସୁଗମ ହୋଇପାରିବ ଏବଂ ଯେଉଁ ଉଦ୍ଦେଶ୍ୟରେ ଉକ୍ତ ଅନୁଷ୍ଠାନଟି ଗଠିତ ହୋଇଥିଲା, ତାହା ନିଶ୍ଚିତ ଭାବେ ଫଳପ୍ରଦ ହେବ ।

ମୁଖ୍ୟବକ୍ତା ରୂପେ ଯୋଗ ଦେଇ ରାଜ୍ୟ ଯୋଜନା ବୋର୍ଡର ଅନ୍ୟତମ ସଦସ୍ୟ ଶ୍ରୀ ଅଜିତ ମହାପାତ୍ର କହିଲେ ଯେ ରାଜ୍ୟର ଆଭ୍ୟନ୍ତରୀଣ ଶିଳ୍ପ କେନ୍ଦ୍ରଗୁଡ଼ିକରେ ପ୍ରତ୍ୟେକ ଆଇ.ଟି.ଆଇ. ଶିକ୍ଷାନବୀଶଙ୍କୁ କାର୍ଯ୍ୟ ଦିଆଯିବା ଉଚିତ ଓ ସେମାନେ ଅଧ୍ୟୟନ ପାଠ୍ୟକ୍ରମ ସହିତ ସେହିସବୁ ଶିଳ୍ପକେନ୍ଦ୍ରରେ ଆହରଣ କରୁଥିବା ତାଲିମ ଓ ଶିକ୍ଷାର ବିନିଯୋଗ କରିବା ଉଚିତ ।

ବୈଷୟିକ ଶିକ୍ଷା ଓ ତାଲିମ ନିର୍ଦ୍ଦେଶକ ଶ୍ରୀ ଖଗେନ୍ଦ୍ର ଦାସ ପ୍ରାରମ୍ଭରେ ୩୫ ଲକ୍ଷ ଟଙ୍କାର ସରକାରୀ ଅନୁଦାନ ସହିତ ଏହି ସ୍ୱୟଂଚାଳିତ ଅନୁଷ୍ଠାନ ନିଜର ଆବଶ୍ୟକତାକୁ ପୂରଣ କରି ଭବିଷ୍ୟତରେ ନିଶ୍ଚିତ ଭାବେ ଏକ ଆଦର୍ଶ ବୈଷୟିକ ତାଲିମ କେନ୍ଦ୍ର ରୂପେ ସମଗ୍ର ଦେଶରେ ଶୀର୍ଷସ୍ଥାନ ଅଧିକାର କରିପାରିବ ବୋଲି ଆଶା ପ୍ରକାଶ କରିଥିଲେ ।

ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ସ୍ଥାନୀୟ ଆଡ୍‌ଭୋକେଟ୍ ଶ୍ରୀ ସନାତନ ବିଶି, ଉକ୍ତ ଆଇ.ଟି.ଆଇ. ଅନୁଷ୍ଠାନର ଅଧ୍ୟକ୍ଷ ଓ ଜିଲ୍ଲାପାଳ ପ୍ରମୁଖ ଯୋଗ ଦେଇଥିଲେ ।

## ରାଜ୍ୟରେ ଶକ୍ତି ଯୋଗାଣ କାର୍ଯ୍ୟକ୍ରମ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଶକ୍ତି ଯୋଗାଣ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷର ପ୍ରଥମ ତିନିମାସ ମଧ୍ୟରେ ଅର୍ଥାତ୍ ଗତ ଜୁନ ମାସ ସୁଦ୍ଧା ମୋଟ୍ ୧୩୮୬ଟି ସେଚ ପମ୍ପସେଟ୍‌ରେ ବିଦ୍ୟୁତ୍‌ଶକ୍ତି ସଂଯୋଗ କରାଯାଇ ପାରିଛି । ଉକ୍ତ କାର୍ଯ୍ୟକ୍ରମରେ କେବଳ ଗତ ଜୁନ୍ ମାସରେ ବିଦ୍ୟୁତ୍ ସଂଯୋଗ କରାଯାଇଥିବା ୧୩୧୧ଟି ସେଚ ପମ୍ପସେଟ୍ ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ବିଦ୍ୟୁତ୍ କାର୍ଯ୍ୟକ୍ରମ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି ।

ସେହିପରି ଉକ୍ତ ସମୟ ମଧ୍ୟରେ, ଅର୍ଥାତ୍ ଚଳିତ ଆର୍ଥିକ ବର୍ଷର ପ୍ରଥମ ତିନିମାସ ମଧ୍ୟରେ ଗାଁଗହଳର ଲୋକମାନଙ୍କୁ ଇନ୍ଧନ ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ୮.୬୦୧ଟି ଉନ୍ନତ ଚୁଲ୍ଲୀ ଏବଂ ୫୦ଟି ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ କରାଯାଇଥିବା, ଯୋଜନା ଓ ସମନ୍ୱୟ ବିଭାଗ ସୂତ୍ରରୁ ଜଣାଯାଇଛି ।

## ଭଦ୍ରକଠାରେ "ରାତି ଆଶ୍ରୟ ଆବାସ" ନିର୍ମିତ ହେବ

ଭଦ୍ରକଠାରେ ଏକ "ରାତି ଆଶ୍ରୟ ଆବାସ" ବା ନାଇଟ ସେଲ୍ଟର ନିର୍ମାଣ ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କର ଅନୁମୋଦନ ଲାଭ କରିଛି । ରାଜ୍ୟ ନଗର ଉନ୍ନୟନ ବିଭାଗ ଆନୁକୂଲ୍ୟରେ ଭଦ୍ରକ ମ୍ୟୁନିସିପାଲିଟି ଅଞ୍ଚଳରେ ନିର୍ମିତ ହେଉଥିବା ଏହି ଆଶ୍ରୟ ନିବାସ ନିର୍ମାଣ ନିମନ୍ତେ ଦଶ ଲକ୍ଷ ଏକୋଇଶ ହଜାର ଟଙ୍କାର ବ୍ୟୟ ମଞ୍ଜୁର କରାଯାଇଛି ।

ଆଗାମୀ ସ୍ୱାୟତ୍ତ ଶାସନ ଦିବସ ଉପଲକ୍ଷେ ଭଦ୍ରକବାସୀଙ୍କୁ ଏହି ଉପହାର ପ୍ରଦାନ କରିଥିବା ଯୋଗୁଁ ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ, ଶ୍ରୀ ବିଜୁ ପଟ୍ଟନାୟକ ଓ ନଗର ଉନ୍ନୟନ ମନ୍ତ୍ରୀ ଶ୍ରୀ ନଳିନୀକାନ୍ତ ମହାନ୍ତିଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରିଛନ୍ତି ।

## 'ଯୁବ ମହିଳା ଓ ଶିଳ୍ପୋଦ୍ୟୋଗ' ସେମିନାର ରାଜ୍ୟପାଳଙ୍କ ଦ୍ୱାରା ଉଦ୍‌ଘାଟିତ ।

ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ବି: ସତ୍ୟନାରାୟଣ ରେଡ୍‌ଡ଼ୀ କଳିଙ୍ଗ ଅଶୋକ ହୋଟେଲ୍‌ରେ ଆୟୋଜିତ 'ଯୁବ ମହିଳା ଓ ଶିଳ୍ପୋଦ୍ୟୋଗ' ଶୀର୍ଷକ ଏକ ତିନିଦିନିଆ ସେମିନାର ଉଦ୍‌ଘାଟନ କରି ମହିଳାମାନଙ୍କର ଅନ୍ତର୍ନିହିତ ଶକ୍ତି ପ୍ରତି ଆସ୍ଥାରଖି ସେମାନଙ୍କୁ ସବୁପ୍ରକାରର ପ୍ରୋତ୍ସାହନ ଯୋଗାଇ ଦେଲେ ଦେଶର ସାମଗ୍ରିକ ଉନ୍ନତି ସମ୍ଭବପର ହେବ ବୋଲି ମତପ୍ରକାଶ କରିଥିଲେ ।

ରାଜ୍ୟ ପାଳ ଆମ ଦେଶର ପୁରାତନ ଗୌରବମୟ ଇତିହାସରେ ମହିଳାମାନଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଥିଲା ବୋଲି ପ୍ରକାଶ କରିଥିଲେ । ଆମର ମହାନ୍ ସଂସ୍କୃତି ସଦା ସର୍ବଦା ନାରୀ ଜାତିର ପୂଜା କରିଆସିଛି । ନାରୀ ଜାତିର ଆତ୍ମନିର୍ଭରଶୀଳ ହେବା ପାଇଁ ଅଦମ୍ୟ ଅଭୀପ୍‌ସା ଓ ଉଦ୍ୟମକୁ ପ୍ରୋତ୍ସାହନ ଦେବା ଉଚିତ ବୋଲି ରାଜ୍ୟପାଳ କହିଥିଲେ । 'ଯେଉଁଠାରେ ନାରୀମାନଙ୍କୁ ସମ୍ମାନ ଦିଆଯାଏ ସେଠାରେ ଈଶ୍ୱର ବିରାଜନ୍ତି' ବେଦର ଏହି ମହାର୍ଘ ଉକ୍ତି ନିରନ୍ତର ସତ୍ୟ ବୋଲି ପ୍ରକାଶ କରି ରାଜ୍ୟପାଳ ମହିଳାମାନଙ୍କୁ ସମୋଚିତ ସୁବିଧା ସୁଯୋଗ ଦିଆଗଲେ ସେମାନେ ପୁରୁଷଙ୍କ ସମକକ୍ଷ କାହିଁକି ସେମାନଙ୍କଠାରୁ ଆହୁରି ବଡ଼ ମଧ୍ୟ ହୋଇପାରିବେ ବୋଲି ଆଶା ପ୍ରକାଶ କରିଥିଲେ । ମାଳତିଦେବୀ, ରମାଦେବୀ, ସରୋଜିନୀ ନାଇଡୁ ଓ ମହାଦେବୀ ବର୍ମାଙ୍କ ପରି ଦେଶଭକ୍ତ ଓ ପ୍ରତିଭାମୟୀ ନାରୀ ସମଗ୍ର ଭାରତବର୍ଷରେ ବିରଳ । ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ୯ଟି ଦେଶରେ ନାରୀ ପ୍ରଧାନମନ୍ତ୍ରୀ ରହିଥିଲେ ବା ଅଛନ୍ତି ବୋଲି ରାଜ୍ୟପାଳ ପ୍ରକାଶ କରିଥିଲେ ।

ଗ୍ରାମାଞ୍ଚଳରେ ବସବାସ କରୁଥିବା ଏବଂ ଦାରିଦ୍ର୍ୟର ସୀମାରେଖା ତଳେ ନ୍ୟାଯ୍ୟ ଦାବୀରୁ ବଞ୍ଚିତ ହୋଇ ରହିଥିବା ଅସଂଖ୍ୟ ମହିଳାଙ୍କର ଜୀବନର ସାମଗ୍ରିକ ଉନ୍ନତି ସାଧନ ଆମ ସମସ୍ତଙ୍କର ଲକ୍ଷ୍ୟ ହେବା ଉଚିତ । ସେମାନଙ୍କର ସମସ୍ତ ସମସ୍ୟାର ଦୂରୀକରଣ ପାଇଁ କ'ଣ କରାଯାଇପାରେ ଏହି ସେମିନାରରେ ଆଲୋଚନା କରାଯିବା ଆବଶ୍ୟକ ବୋଲି ରାଜ୍ୟପାଳ କହିଥିଲେ । ତ୍ରିଦିବସୀୟ ଏହି ଆଲୋଚନା ଚକ୍ର ନାରୀ ସମୃଦ୍ଧିର ପଥପ୍ରଦର୍ଶକ ହେଉ ବୋଲି ରାଜ୍ୟପାଳ ଆଶାପୋଷଣ କରିଥିଲେ ।

ପର୍ଯ୍ୟଟନ ଓ କ୍ରୀଡ଼ା ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ ପୁରାତନ ଓ ସାମ୍ପ୍ରତିକ ସମାଜରେ ମହିଳାମାନେ ଉଚ୍ଚ ସ୍ଥାନ ଅଧିକାର କରିଆସିଛନ୍ତି ବୋଲି ବର୍ଣ୍ଣନା କରିଥିଲେ । ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନାରୀମାନଙ୍କର ନ୍ୟାଯ୍ୟ ଦାବୀ ପୂରଣ ପ୍ରତି ଆଶାପୋଷଣ କରିଛନ୍ତି । ତାଙ୍କର ପ୍ରୋତ୍ସାହନ ବଳରେ ଆଜି ରାଜ୍ୟ ସରକାର ପଞ୍ଚାୟତି ଶାସନରେ ଏବଂ ସରକାରୀ ଚାକିରୀ କ୍ଷେତ୍ରରେ ଶତକଡା ୩୦ ଭାଗ ସ୍ଥାନ ମହିଳାମାନଙ୍କ ପାଇଁ ସଂରକ୍ଷିତ କରାଯାଇଛି । ମହିଳା ବିକାଶ ନିଗମ ରାଜ୍ୟ ସରକାରଙ୍କ ଦ୍ୱାରା ଆରମ୍ଭ କରାଯାଇଛି ଏବଂ ଏହି ନିଗମ ନାରୀମାନଙ୍କ ଆତ୍ମନିର୍ଭରଶୀଳ କରିବା ପାଇଁ କୃତ ସଂକଳ୍ପ ବୋଲି ମନ୍ତ୍ରୀ ମହୋଦୟ କହିଥିଲେ ।

ନୂଆଦିଲ୍ଲୀସ୍ଥିତ ଆନ୍ତର୍ଜାତିକ ଯୁବ କେନ୍ଦ୍ରର ନିର୍ଦ୍ଦେଶିକା ଡକ୍ଟର ଇନ୍ଦିରା କୋଇଥରା ଏହି ସେମିନାର ଉଦ୍‌ଘାଟନ ଉତ୍ସବରେ ଯୋଗ ଦେଇ କେନ୍ଦ୍ରର ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ସମ୍ପର୍କରେ ସୂଚନା ଦେଇଥିଲେ । ସାକ୍ଷରତା, ସ୍ୱାସ୍ଥ୍ୟ ଏବଂ ସ୍ୱଳ୍ପ ମୂଲ୍ୟର ଆବାସ ଯୋଜନା ଆଦି କାର୍ଯ୍ୟକ୍ରମ ଏହି କେନ୍ଦ୍ରର ପ୍ରଶିକ୍ଷଣର ବିଷୟବସ୍ତୁ ରହିଛି । ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଶାରେ ଯୁବକର୍ମୀମାନଙ୍କର ସହଯୋଗରେ "କ୍ଷୁଧା ହଟାଅ" କାର୍ଯ୍ୟକ୍ରମର ଉଦ୍‌ଘାଟନ କରି ପ୍ରୋତ୍ସାହନ ଦେଇଥିବାରୁ ଶ୍ରୀମତୀ କୋଇଥରା ପ୍ରକାଶ କରିଥିଲେ । ସମାଜର ପ୍ରତ୍ୟେକ ସ୍ତରରେ ବଞ୍ଚିତ ହୋଇ ରହିଥିବା ମହିଳାମାନଙ୍କର ଜୀବନର ମାନ ବୃଦ୍ଧି କରାଇବା ଆଜି ସମସ୍ତଙ୍କର ଧ୍ୟେୟ ହେଉ ବୋଲି ଡକ୍ଟର କୋଇଥରା କହିଥିଲେ ।

ସୂଚନା ଓ ଲୋକ ସମ୍ପର୍କ, କ୍ରୀଡ଼ା ଓ ଯୁବକଲ୍ୟାଣ ବିଭାଗ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଏହି ସେମିନାରରେ ଯୋଗଦେଇ ଦୀର୍ଘ ଦିନ ଧରି ବହୁ ଯତ୍ନ ଓ ଉଦ୍ୟୋଗ ସତ୍ତ୍ୱେ ଆମ ରାଜ୍ୟରେ ମୃତ୍ୟୁ ହାର, ସ୍କୁଲ ପରିତ୍ୟାଗ ସଂଖ୍ୟା ଆଦି କ୍ଷେତ୍ରରେ ଉପଲବ୍ଧି ଉଦ୍‌ବେଗର କାରଣ ହୋଇ ରହିଛି । ନାରୀମାନଙ୍କ ଯଥୋଚିତ ସମ୍ମାନ ଆଜିର ସମାଜ ପ୍ରଦାନ କରିବାରେ ସମର୍ଥ ହୋଇ ପାରିନି ବୋଲି ସେ କ୍ଷୋଭ ପ୍ରକାଶ କରି ସମ୍ପୃକ୍ତ କାର୍ଯ୍ୟକ୍ରମ ମାଧ୍ୟମରେ ଓ ଦୃଢ଼ ଇଚ୍ଛାଶକ୍ତି ଭାବରେ ମହିଳାମାନେ ଆତ୍ମନିର୍ଭରଶୀଳ ହୋଇପାରିବେ ବୋଲି ମତପ୍ରକାଶ କରିଥିଲେ ।

କ୍ରୀଡା ଓ ଯୁବକଲ୍ୟାଣ ବିଭାଗ ନିର୍ଦ୍ଦେଶକ ଡକ୍ଟର ବିମଳେନ୍ଦୁ ମହାନ୍ତି ସ୍ୱାଗତ ଭାଷଣ ଦେଇଥିଲେ । ଆନ୍ତର୍ଜାତିକ ଯୁବ କେନ୍ଦ୍ରର ମିସ୍ ଗୀତା ଗୋପୀନାଥ ଧନ୍ୟବାଦ ଦେଇଥିଲେ ।

## ଓଡ଼ିଶା ରାଜ୍ୟପାଳଙ୍କ ଦୁଇଦିନିଆ ସୁନ୍ଦରଗଡ଼ ଜିଲ୍ଲା ପରିଦର୍ଶନ

ଓଡ଼ିଶାର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍‌ଡ୍ୀ ପଦଭାର ଗ୍ରହଣ କରିବା ପରେ ପ୍ରଥମ କରି ଏକ ଦୁଇଦିନିଆ ଗସ୍ତରେ ସୁନ୍ଦରଗଡ଼ ଜିଲ୍ଲା ଓ ରାଉରକେଲା ଇସ୍‌ପାତ କାରଖାନା ପରିଦର୍ଶନରେ ଯାଇ ରାଉରକେଲା ଉଡ଼ାଜାହାଜ ପଡ଼ିଆରେ ଅବତରଣ କରିଥିଲେ । ସୁନ୍ଦରଗଡ଼ ଜିଲ୍ଲାପାଳ, ଅତିରିକ୍ତ ଜିଲ୍ଲାପାଳ, ଡି: ଆଇ: ଜି:, ଏସ୍: ପି: ଓ ରାଉରକେଲା ଇସ୍‌ପାତ କାରଖାନାର ବରିଷ୍ଠ କର୍ମକର୍ତ୍ତାଗଣ ରାଜ୍ୟପାଳଙ୍କ ଉଡ଼ାଜାହାଜର ଅବତରଣ କଳାପରେ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଥିଲେ ।

ଇସ୍‌ପାତ କାରଖାନାର ଅତିଥି ଭବନଠାରେ ଅଳ୍ପ ସମୟ ବିଶ୍ରାମ ନେବାପରେ ଶ୍ରୀ ରେଡ୍‌ଡ୍ୀ ଇସ୍‌ପାତ କାରଖାନା ତରଫରୁ ସୃଷ୍ଟି କରାଯାଇଥିବା ୨୫ ଏକରର ଗ୍ରୀନ୍‌ପାର୍କ ପରିଦର୍ଶନ କରି ଗୋଟିଏ ଅଶୋକ ବୃକ୍ଷର ଚାରା ରୋପଣ କରିଥିଲେ ଏବଂ ପରିବେଶର ସୁରକ୍ଷା ନିମନ୍ତେ ଏହି ପ୍ରଚେଷ୍ଟା ଅତିବ ପ୍ରଶଂସନୀୟ ବୋଲି ମତବ୍ୟକ୍ତ କରିଥିଲେ । ଏଭଳି ଅନେକଗୁଡ଼ିଏ ଗ୍ରୀନ୍‌ପାର୍କ ଏବେବଡ଼ ଏକ ଶିଳ୍ପ ନଗରୀ ପାଇଁ ଏକାନ୍ତ ପ୍ରୟୋଜନ ବୋଲି ଶ୍ରୀ ରେଡ୍‌ଡ୍ୀ କହିଥିଲେ ।

## ଆଦିବାସୀ ଛାତ୍ରାବାସ ଓ ପ୍ରଶାସନିକ ଭବନର ଶିଳାନ୍ୟାସ

ସମ୍ପ୍ରତି ମାନ୍ୟବର ରାଜ୍ୟପାଳ ଏହାପରେ ବେଦବ୍ୟାସ (ଶଙ୍ଖ, କୋଏଲ ଓ ସରସ୍ୱତୀର ସଙ୍ଗମ ସ୍ଥଳ)ଠାରେ ଅବସ୍ଥିତ ବେଦବ୍ୟାସ ମହାବିଦ୍ୟାଳୟ ପରିଦର୍ଶନ କରିବାକୁ ଯାଇ ୪.୫ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ଏକ ଆଦିବାସୀ ଛାତ୍ରବାସ ଗୃହର ଉଦ୍‌ଘାଟନ କରିଥିଲେ ଏବଂ ୨.୫ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଯାଉଥିବା ପ୍ରଶାସନିକ ଭବନର ଶିଳାନ୍ୟାସ କରିଥିଲେ । ରାଉରକେଲା ଇସ୍‌ପାତ କାରଖାନା ଏହି ପ୍ରଶାସନିକ ଭବନ ନିର୍ମାଣ ପାଇଁ ଅର୍ଥ ଯୋଗାଇ ଦେଇଛନ୍ତି ବୋଲି ରାଜ୍ୟପାଳଙ୍କୁ ସୂଚନା ଦିଆଯାଇଥିଲା ।

ରାଜ୍ୟପାଳ ଶ୍ରୀ ରେଡ୍‌ଡ୍ୀ ଏହି ଅବସରରେ ଛାତ୍ରଛାତ୍ରୀ ଓ ଗ୍ରାମବାସୀମାନଙ୍କ ଉଦ୍‌ବୋଧନ ଦେଇ କହିଥିଲେ ଯେ, ବିଦ୍ୟାଳୟଗୁଡ଼ିକ ମନ୍ଦିରର ମର୍ଯ୍ୟାଦା ସର୍ବଦା ଦିଆଯିବା ଉଚିତ କାରଣ ଏ ଦେଶର ମର୍ଯ୍ୟାଦା, ପ୍ରଗତି ଓ ଅଖଣ୍ଡତା ରକ୍ଷାକରିବାର ଦାୟିତ୍ୱ ଶିକ୍ଷାୟତନମାନଙ୍କରୁ ବାହାରୁଥିବା ଆଗାମୀ କାଲିର ବଂଶଧରମାନଙ୍କର । ରାଜ୍ୟବାସୀ ଯେ ଯେଉଁ ସ୍ଥାନରେ ଥାଆନ୍ତୁନା କାହିଁକି ପ୍ରତ୍ୟେକ ସେମାନଙ୍କର ପୁତ୍ର ଓ କନ୍ୟାମାନଙ୍କୁ ଶିକ୍ଷାଦାନ ଦେବାରେ ଆଦୌ ଅବହେଳା କରନ୍ତୁ ନାହିଁ ବୋଲି ଶ୍ରୀ ରେଡ୍‌ଡ୍ୀ ଆହ୍ୱାନ ଜଣାଇଥିଲେ । ବିଶେଷକରି ଆଦିବାସୀ ବହୁଳ ଅଞ୍ଚଳରେ ଶିକ୍ଷାଦାନ ପ୍ରତି ରାଜ୍ୟ ସରକାର ବିଶେଷ ଆଗ୍ରହ ପ୍ରକାଶ କରିବା ଦ୍ୱାରା ନିରକ୍ଷରତା ଦୂର କରିବାରେ ଏହା ସହାୟକ ହେବ ବୋଲି ମତ ଦେଇଥିଲେ । ମହାବିଦ୍ୟାଳୟର ଅଧ୍ୟକ୍ଷ ଏହି ଅନୁଷ୍ଠାନଟିକୁ ସରକାର ନିଜ ହାତକୁ ନିଅନ୍ତୁ ବୋଲି ଦେଇଥିବା ପରାମର୍ଶ ଉପରେ ମତଦେଇ ରାଜ୍ୟପାଳ କହିଥିଲେ ଯେ, ଏହି ପ୍ରସ୍ତାବକୁ ସେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବେ । ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ଶ୍ରୀ ରେଡ୍‌ଡ୍ୀ କହିଥିଲେ ଯେ, ଏ ଦେଶ ଅତୀବ ମହାନ । ସମସ୍ତ ସମସ୍ୟା ବିନା ଉତ୍ତେଜନାରେ ଆପୋଷ ଆଲୋଚନା ଦ୍ୱାରା ସମାଧାନ କରିବା ସମସ୍ତଙ୍କ ଧ୍ୟେୟ ହେଉ ବୋଲି ରାଜ୍ୟପାଳ ଆଶାପ୍ରକାଶ କରିଥିଲେ । ସହନଶୀଳତା, ଅପରର ଭାବନାକୁ ସମ୍ମାନ ଦେବା ଏବଂ କାୟୋମନୋବାକ୍ୟରେ ହିଂସାର ଆଶ୍ରୟ ନ ନେବାକୁ ଛାତ୍ରଛାତ୍ରୀମାନେ ବାଲ୍ୟାବସ୍ଥାରୁ ଅଭ୍ୟାସ କରନ୍ତୁ ବୋଲି ଶ୍ରୀ ରେଡ୍‌ଡ୍ୀ ଏକ ମର୍ମସ୍ପର୍ଶୀ ନିବେଦନ ଜଣାଇଥିଲେ ।

## ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଦ୍ୱାରା ପ୍ରତିଷ୍ଠିତ ଫଳ ବଗିଚା ପରିଦର୍ଶନ

ରାଉରକେଲାଠାରୁ ପ୍ରାୟ ୪୫ କି.ମି. ଦୂରରେ ଅବସ୍ଥିତ ଡୋଫାବଣ୍ଡା ଗ୍ରାମକୁ ରାଜ୍ୟପାଳ ପରିଦର୍ଶନ କରିବାକୁ ଯାଇଥିଲେ । ସୁନ୍ଦରଗଡ଼ ଜିଲ୍ଲାର ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା ଦ୍ୱାରା ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ମାଧ୍ୟମରେ ପ୍ରତିଷ୍ଠା କରାଯାଇଥିବା ଫଳ ବଗିଚା ଶ୍ରୀ ରେଡ୍‌ଡ୍ୀ ବୁଲି ଦେଖିଥିଲେ । ୧୧୫ ଏକର ବିଶିଷ୍ଟ ଏହି ଜମିରେ ୨୩୦ ଜଣ ହିତାଧିକାରୀଙ୍କୁ ଥଇଥାନ କରିବାର ଏହି ପ୍ରୟାସ କେତେଦୂର ସଫଳ ହୋଇଛି ତାହା ଶ୍ରୀ ରେଡ୍‌ଡ୍ୀ ବୁଝିବା ପାଇଁ ଅନେକ ହିତାଧିକାରୀଙ୍କ ସହିତ ଭାବ ବିନିମୟ କରିଥିଲେ । ସେ ଏସବୁ ବୁଝିଲେ ଯେ, ପ୍ରତ୍ୟେକ ଚାଷୀ ଅଧ ଏକର ଜମିରେ ପ୍ରାୟ ୬୦୦ କଦଳୀ ଗଛ ଲଗାଇ ତିନି ଫସଲ ଆରମ୍ଭ କରିବା ଦ୍ୱାରା ସେମାନେ ବର୍ଷକୁ ୧୦ ହଜାର ଟଙ୍କା ପାଉଛନ୍ତି ବୋଲି କହିଥିଲେ । ସରକାରୀ ଅନୁଦାନ ପ୍ରତି ଏକର ପିଛା ୫ ହଜାର ଟଙ୍କା ସେମାନଙ୍କୁ ମିଳିଛି ବୋଲି ଜଣାଇଥିଲେ । କଦଳୀ ଗଛ ବ୍ୟତୀତ ବାଉଁଶ ପରି ଏକ ଅର୍ଥକାରୀ ଜଙ୍ଗଲ ସୃଷ୍ଟି କରି ଏ ଅଞ୍ଚଳରେ ରହୁଥିବା ଅଧୁକାଂଶ ଆଦିବାସୀ ସମ୍ପ୍ରଦାୟର କାରୀଗରମାନଙ୍କୁ କଞ୍ଚାମାଲ ଯୋଗାଇବା ନିମନ୍ତେ ହିତାଧିକାରୀମାନଙ୍କୁ ଉତ୍ସାହିତ କରାଯାଉଥିବା ଦେଖି ଶ୍ରୀ ରେଡ୍‌ଡ୍ୀ ଆନନ୍ଦ ପ୍ରକାଶ କରିଥିଲେ ଏବଂ ତତ୍‌କ୍ଷଣାତ୍ ବୁଲି ବାଉଁଶ ଗଛ ଏବଂ କଦଳୀ ପୁଆ ହିତାଧିକାରୀଙ୍କ ମଧ୍ୟରେ ବଣ୍ଟନ କରିଥିଲେ । ରାଜ୍ୟପାଳଙ୍କୁ ଗ୍ରାମବାସୀମାନଙ୍କ ତରଫରୁ ଏକ ପଗଡ଼ୀ ବାନ୍ଧି ଦିଆଯାଇ ଓ ଝିଅମାନେ ପାରମ୍ପରିକ ବେଶ ପରି ନୃତ୍ୟ ପରିବେଷଣ କରି ଭବ୍ୟ ଓ ଚିତ୍ତାକର୍ଷକ ଅଭିନନ୍ଦନ ଜଣାଇଥିଲେ ।

## ଖୋର୍ଦ୍ଧା ଜିଲ୍ଲାରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ଉପରେ ଗୁରୁତ୍ୱ

ଖୋର୍ଦ୍ଧା ଜିଲ୍ଲାର ଭୁବନେଶ୍ୱର ସମେତ ବିଭିନ୍ନ ସହରାଞ୍ଚଳରେ ଜନସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଉଥିବା ଦୃଷ୍ଟିରୁ ଅଧିକ ଦୁଗ୍ଧ

ଗୋପାଳନର ଆବଶ୍ୟକତା ଉପଲବ୍ଧ ହେଉଛି । ତେଣୁ ଏହି ଅଞ୍ଚଳରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ଓ ଏହା ମାଧ୍ୟମରେ ଅର୍ଥନୈତିକ ଦୁର୍ବଳ ଶ୍ରେଣୀ ଲୋକଙ୍କର ଆର୍ଥିକ ବିକାଶ ଉପରେ ଜିଲ୍ଲା ପ୍ରଶାସନ ପକ୍ଷରୁ ଗୁରୁତ୍ୱ ଦିଆଯାଉଛି ।

ସମ୍ପ୍ରତି ଏ ସଂପର୍କରେ ଏକ ଆଲୋଚନା ସଭା ଜିଲ୍ଲାପାଳ ଶ୍ରୀ ରଘୁନାଥ ମିଶ୍ରଙ୍କ ଅଧ୍ୟକ୍ଷତାରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଅତିରିକ୍ତ ଜିଲ୍ଲାପାଳ, ସମସ୍ତ ଉପ ଜିଲ୍ଲାପାଳ ଓ ଗୋଷ୍ଠୀ ଉନ୍ନୟନ ଅଧିକାରୀ, ମୁଖ୍ୟ ପଶୁ ଚିକିତ୍ସା ଅଧିକାରୀ, ମିଲ୍କ ୟୁନିୟନ୍ କର୍ମକର୍ତ୍ତା ତଥା ଅନ୍ୟ ଜିଲ୍ଲା ଅଧିକାରୀମାନେ ଯୋଗ ଦେଇଥିଲେ । ଦୁଗ୍ଧ ଶୀତଳିକରଣ କେନ୍ଦ୍ରକୁ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ କରିବା ପାଇଁ ପଥ ପାର୍ଶ୍ୱ ଗ୍ରାମମାନଙ୍କରେ ଗୋପାଳନ ଅଧିକ ସମ୍ପ୍ରସାରିତ କରିବା ଓ ଚଳିତ ଆର୍ଥିକ ବର୍ଷ ଆଇ.ଆର୍.ଡି. ଯୋଜନାରେ ହିତାଧିକାରୀମାନଙ୍କୁ ୩୬୦ଟି ଉନ୍ନତ ଗାଈ ଯୋଗାଇ ଦେବାକୁ ଏହି ବୈଠକରେ ସ୍ଥିର କରାଗଲା ।

ଆଗାମୀ ସେପ୍‌ଟେମ୍ବର ମାସ ଶେଷ ସୁଦ୍ଧା ହିତାଧିକାରୀମାନଙ୍କ ତାଲିକା ଗୋଷ୍ଠୀ ଉନ୍ନୟନ ଅଧିକାରୀମାନେ ପ୍ରସ୍ତୁତ କରି ବ୍ୟାଙ୍କମାନଙ୍କୁ ଯୋଗାଇ ଦେବେ । ଗାଈଗୁଡ଼ିକ ଜଗନ୍ନାଥପୁର ଡାଇରି ଫାର୍ମରୁ ନିଜେ ହିତାଧିକାରୀମାନେ ବାଛିବେ ଓ ଗୋଷ୍ଠୀ ଉନ୍ନୟନ ଅଧିକାରୀ, ଉପ ଜିଲ୍ଲାପାଳ, ଜିଲ୍ଲା ମୁଖ୍ୟ ପଶୁ ଚିକିତ୍ସା ଅଧିକାରୀ ତଥା ମିଲ୍‌କ୍ ୟୁନିୟନ୍ ଜେନେରାଲ୍ ମ୍ୟାନେଜରଙ୍କୁ ଏହା ଜଣାଇ ଦିଆଯିବ । ହିତାଧିକାରୀମାନେ ନିଜେ ବାଛିଥିବା ଗାଈ ହିଁ ସେମାନଙ୍କୁ ଯୋଗାଇ ଦିଆଯିବ । ଏହା ବ୍ୟତୀତ ଗୋପାଳନ ଓ ଦୁଗ୍ଧ ଉତ୍ପାଦନ ସମ୍ପର୍କରେ ଆବଶ୍ୟକୀୟ ପ୍ରଶିକ୍ଷଣ ପାଇଁ ଗୁଜୁରାଟରୁ ଆନନ୍ଦକୁ ସମ୍ପୃକ୍ତ ପଦାଧିକାରୀମାନଙ୍କୁ ପଠାଇବା ନିମନ୍ତେ ରାଜ୍ୟ ସରକାରଙ୍କୁ ପ୍ରସ୍ତାବ ଦେବା ପାଇଁ ମଧ୍ୟ ଏହି ଆଲୋଚନା ସଭାରେ ନିଷ୍ପତ୍ତି ନିଆଯାଇଛି ।

## ବାରିପଦାଠାରେ ପର୍ଯ୍ୟଟନ କାର୍ଯ୍ୟାଳୟର ନୂତନ ଅଫିସ ଗୃହ ଉଦ୍‌ଘାଟନ

ଗତ ଜୁଲାଇ ମାସ ୩୧ ତାରିଖ ଅପରାହ୍ନରେ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ଦ୍ୱାରା ମୟୂରଭଞ୍ଜ ଜିଲ୍ଲା ବାରିପଦାଠାରେ ଜିଲ୍ଲା ପର୍ଯ୍ୟଟନ କାର୍ଯ୍ୟାଳୟର ନୂତନ ଗୃହ ଉଦ୍‌ଘାଟିତ ହୋଇଯାଇଛି । ଏହି ଅବସରରେ ଶ୍ରୀ ସିଂହଦେଓ ଓ ସ୍ଥାନୀୟ ବିଧାୟକ ଶ୍ରୀ ଛତିଶ ଚନ୍ଦ୍ର ଧଳ ଅଫିସ ପରିସରରେ ଦୁଇଟି ବୃକ୍ଷରୋପଣ କରିଥିଲେ । ଏହି ଉତ୍ସବରେ ପର୍ଯ୍ୟଟନ ନିର୍ଦ୍ଦେଶକ ଶ୍ରୀ ସୁରେଶ ଚନ୍ଦ୍ର ପଣ୍ଡା, ଜିଲ୍ଲାପାଳ ଶ୍ରୀ ବିପିନି କୁମାର ସାକ୍‌ସେନା, ପର୍ଯ୍ୟଟନ ବିଭାଗ ଉପ ସଚିବ ଶ୍ରୀ ଏସ୍. ଏନ୍. ପ୍ରହରାଜ, ପୂର୍ତ୍ତ ବିଭାଗର ଅଧିକ୍ଷଣ ଯନ୍ତ୍ରୀ ପ୍ରମୁଖ ଯୋଗ ଦେଇଥିଲେ । ଶ୍ରୀ ସିଂହଦେଓ ଏଠାରେ ଏକ ଯାନ୍ତ୍ରିକ ପ୍ରକୋଷ୍ଠର ଆବଶ୍ୟକତା ଉପଲବ୍ଧିକରି ଏ ଦିଗରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ପୂର୍ବରୁ ଶ୍ରୀ ସିଂହଦେଓ ପଶ୍ଚିମ ବଙ୍ଗଳାର ଦିଘା ପରିଦର୍ଶନକରି ସେଠାରେ ପର୍ଯ୍ୟଟନର ବିକାଶ ପାଇଁ ନିଆଯାଉଥିବା ପଦକ୍ଷେପ ସମ୍ପର୍କରେ ଅନୁଧ୍ୟାନ କରିଥିଲେ । ସେ ଚନ୍ଦନେଶ୍ୱର ପାନ୍ଥଶାଳା ମଧ୍ୟ ପରିଦର୍ଶନ କରିଥିଲେ । ଜଳେଶ୍ୱରଠାରେ ମହିଳା କଲେଜର ବୃକ୍ଷରୋପଣ ଓ ଏକ ଷ୍ଟାଡ଼ିୟମ ନିର୍ମାଣ କାର୍ଯ୍ୟକ୍ରମରେ ଯୋଗଦେଇ ସେ କହିଲେ ଯେ, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ପରିଚାଳିତ ସରକାର ରାଜ୍ୟରେ କ୍ରୀଡ଼ାର ବିକାଶ ପାଇଁ ବିଭିନ୍ନ ଯୋଜନା ପ୍ରଣୟନ କରିଛନ୍ତି । ସ୍ଥାନୀୟ ଯୁବକ ଯୁବତୀ ଓ ଅନୁଷ୍ଠାନମାନେ ଏ ସମ୍ପର୍କରେ ସବିଶେଷ ବିବରଣୀ ପାଇଁ ଜିଲ୍ଲା କ୍ରୀଡ଼ା ଅଧିକାରୀଙ୍କ ସହିତ ଯୋଗାଯୋଗ କରିବାକୁ ସେ ପରାମର୍ଶ ଦେଇଥିଲେ । ଏହାପରେ ସେ ଲକ୍ଷ୍ମଣନାଥ ପରିଦର୍ଶନ କରି ତାହାକୁ ଏକ ପର୍ଯ୍ୟଟନ କେନ୍ଦ୍ର ଭାବରେ ବିକଶିତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଏହିସବୁ କାର୍ଯ୍ୟକ୍ରମରେ ସ୍ଥାନୀୟ ବିଧାୟକ ଶ୍ରୀ ଅଶ୍ୱିନୀ କୁମାର ପାତ୍ର ଯୋଗ ଦେଇଥିଲେ ।

## ଶାରୀରିକ ବିକଳାଙ୍ଗ ଲୋକମାନଙ୍କର ସହାୟତା ଏକ ସାମାଜିକ ଦାୟିତ୍ୱ

ଶାରୀରିକ ବିକଳାଙ୍ଗ ଶିଶୁମାନଙ୍କ ନିମନ୍ତେ ଉପଯୁକ୍ତ ଶିକ୍ଷା ବ୍ୟବସ୍ଥା, ସେମାନଙ୍କର ଥଇଥାନ ତଥା ସେବା ମନୋବୃତ୍ତି ନେଇ ବିକଳାଙ୍ଗମାନଙ୍କୁ ସହାୟତା ଯୋଗାଇ ଦେବା ଏକ ସାମାଜିକ କର୍ତ୍ତବ୍ୟ ବୋଲି ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ମତ ଦେଇଛନ୍ତି । ଗତ ଅଗଷ୍ଟ ୯ ତାରିଖ ଦିନ ଅଲ୍ଲୀ ଜବରଜଙ୍ଗ ଜାତୀୟ ବଧିର ପ୍ରତିଷ୍ଠାନର ଦଶମ ପ୍ରତିଷ୍ଠା ଦିବସ ପାଳନ ଅବସରରେ ଭୁବନେଶ୍ୱର ଆଞ୍ଚଳିକ କେନ୍ଦ୍ରରେ ଅନୁଷ୍ଠିତ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ଶ୍ରୀ ଜେନା କହିଲେ ଯେ ଭାରତ ଛାଡ଼ ଆନ୍ଦୋଳନ ପରି ଏକ ପବିତ୍ର ଦିବସରେ ପ୍ରତିଷ୍ଠିତ ଏହି ପ୍ରତିଷ୍ଠାନ ଗ୍ରାମାଞ୍ଚଳ, ବିଶେଷତଃ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବଧିରମାନଙ୍କର ସେବା ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ଆବଶ୍ୟକ । ଏହି କ୍ଷେତ୍ରରେ ବିଭିନ୍ନ ପ୍ରଚାର ମାଧ୍ୟମର ସହାୟତା ନେଇ ଆବଶ୍ୟକୀୟ ଜନଚେତନା ସୃଷ୍ଟି କରିବା ନିମନ୍ତେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ପକ୍ଷରୁ ବିହିତ ପଦକ୍ଷେପ ନିଆଯିବ ବୋଲି ମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ ।

ଏହି ଉତ୍ସବରେ ସଭାପତିତ୍ୱ କରି ସମାଜ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା ଗ୍ରାମାଞ୍ଚଳରେ ବିକଳାଙ୍ଗ ଲୋକମାନଙ୍କର ଉପଯୁକ୍ତ ଥଇଥାନ ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ମତ ଦେଇଥିଲେ । ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନର ବ୍ୟବସାୟିକ ଆଭିମୁଖ୍ୟ ଯୋଗୁଁ ସେମାନେ ଏହି ଭୂମିକା ଫଳପ୍ରଦ ରୂପେ କାର୍ଯ୍ୟକାରୀ କରି ପାରୁନାହାନ୍ତି । ବଧିରମାନଙ୍କୁ ଯୋଗାଇ ଦିଆଯାଉଥିବା ଶ୍ରବଣ ଯନ୍ତ୍ର ଅନେକ ସମୟରେ ଭୁଲ ଭାବରେ କାର୍ଯ୍ୟ କରୁନଥିବା ଯୋଗୁଁ ଦୁଃଖ ପ୍ରକାଶ କରି ଶ୍ରୀ ବେହେରା କହିଲେ ଯେ ଉପଯୁକ୍ତ ପରୀକ୍ଷାକରି ଏପରି ଯନ୍ତ୍ର ଯୋଗାଯିବା ଆବଶ୍ୟକ ।

ପ୍ରାରମ୍ଭରେ ଆଞ୍ଚଳିକ କେନ୍ଦ୍ରର ସହକାରୀ ନିର୍ଦ୍ଦେଶିକା ଶ୍ରୀମତୀ ପ୍ରଭାତୀ ମିଶ୍ର ଅନୁଷ୍ଠାନର କାର୍ଯ୍ୟକ୍ରମ, ଆଭିମୁଖ୍ୟ ଓ ସମସ୍ୟା ସମ୍ପର୍କରେ ଆଲୋକପାତ କରିଥିଲେ ।

ମୁଖ୍ୟ ଅତିଥି ଶ୍ରୀ ଜେନା ବଧୀର ଶିଶୁମାନଙ୍କ ଶ୍ରବଣ ଯନ୍ତ୍ର ଓ ବିଭିନ୍ନ ପ୍ରତିଯୋଗିତାରେ କୃତୀ ଶିକ୍ଷାର୍ଥୀମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

## ମରୁଡ଼ିର ସ୍ଥାୟୀ ପ୍ରତିକାର ପାଇଁ ୧୩୦୩ କୋଟି ଟଙ୍କାର ପରିକଳ୍ପନା

କୋରାପୁଟ, କଳାହାଣ୍ଡି, ମାଲକାନଗିରି, ନବରଙ୍ଗପୁର, ରାୟଗଡ଼ା, ସୋନପୁର, ବଲାଙ୍ଗୀର ଓ ନୂଆପଡ଼ା ଆଦି ଆଠଟି ଜିଲ୍ଲାର ମରୁଡ଼ି ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ଗତ ଅପ୍ରେଲଠାରୁ ଜୁନ୍ ମାସ ମଧ୍ୟରେ ୬୩·୬୬ କୋଟି ଟଙ୍କା ବ୍ୟୟ କରାଯାଇ ପ୍ରତ୍ୟହ ହାରାହାରି ୨·୫୦ ଲକ୍ଷ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇଛି ଏବଂ ଏହି ଅଞ୍ଚଳର ସ୍ଥାୟୀ ମରୁଡ଼ି ପ୍ରତିକାର ପାଇଁ ଏକ ୫ ବର୍ଷିଆ ଦୀର୍ଘସୂତ୍ରୀ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇ କେନ୍ଦ୍ର ସରକାରଙ୍କୁ ଏକ ରିପୋର୍ଟ ଦିଆଯାଇଛି ବୋଲି ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ପ୍ରକାଶ କରିଛନ୍ତି ।

ଏହି ଯୋଜନାରେ ୫ ବର୍ଷ ମଧ୍ୟରେ ଉପରୋକ୍ତ ଆଠଟି ଜିଲ୍ଲାରେ ୧୩୦୩ କୋଟି ଟଙ୍କା ବିନିଯୋଗ ପାଇଁ ପରିକଳ୍ପନା କରାଯାଇଛି । ଏହି ୧୩୦୩ କୋଟି ଟଙ୍କା ମଧ୍ୟରୁ ରାଜ୍ୟ ଯୋଜନା ଓ ସମନ୍ୱୟ ବିଭାଗ ଦ୍ୱାରା ପ୍ରସ୍ତୁତ ଯୋଜନାରେ ୬୭୯ କୋଟି ଟଙ୍କା ମିଳିବାର ସମ୍ଭାବନା ଥିବା ବେଳେ ଅବଶିଷ୍ଟ ୬୨୪ କୋଟି ଟଙ୍କା କେନ୍ଦ୍ରୀୟ ଅନୁଦାନ ମିଳିବା ପାଇଁ କେନ୍ଦ୍ର ସରକାରଙ୍କୁ ପ୍ରସ୍ତାବ ଦିଆଯାଇଛି ବୋଲି ମନ୍ତ୍ରୀ ଶ୍ରୀ ନାୟକ ସୂଚନା ଦେଇଥିଲେ ।

ଏହି ପ୍ରସ୍ତାବରେ ଉକ୍ତ ଆଠଟି ଜିଲ୍ଲାରେ ପ୍ରତ୍ୟେକ ଗ୍ରାମ ପାଇଁ ପ୍ରକଳ୍ପ ନିର୍ଦ୍ଧାରଣ କରାଯାଇଛି । ଏହି ଯୋଜନା ଫଳରେ ପ୍ରତ୍ୟେକ ଗ୍ରାମରେ ବର୍ଷକୁ ଅନ୍ୟୁନ ୨୦୦ କର୍ମ ଦିବସ ସୃଷ୍ଟି କରାଯାଇ ୨·୫ ଲକ୍ଷ ଲୋକଙ୍କୁ କାମଧନ୍ଦା ଯୋଗାଇ ଦିଆଯାଇ ପାରିବ । ମରୁଡ଼ି ପ୍ରତିକାର ବିଧାନ କାର୍ଯ୍ୟ ତଦାରଖ କରିବା ସଙ୍ଗେ ସଙ୍ଗେ ରାଜ୍ୟ ସରକାରଙ୍କ ଦ୍ୱାରା ନିଯୁକ୍ତ ସ୍ୱତନ୍ତ୍ର ପ୍ରକଳ୍ପ ପ୍ରଶାସକ ଏହି ପ୍ରକଳ୍ପ ରିପୋର୍ଟ ସ୍ୱଳ୍ପମାସ ମଧ୍ୟରେ ଚୂଡ଼ାନ୍ତ କରିବା ପାଇଁ ସକ୍ଷମ ହୋଇଛନ୍ତି ।

ରାଜ୍ୟର ଅନ୍ୟାନ୍ୟ ଜିଲ୍ଲାଗୁଡ଼ିକର ମରୁଡ଼ି ପ୍ରତିକାର ପାଇଁ ୩·୬୦ କୋଟି ଟଙ୍କା ମଧ୍ୟ ବ୍ୟୟ କରାଯାଇଛି ବୋଲି ମନ୍ତ୍ରୀ ଶ୍ରୀ ନାୟକ ପ୍ରକାଶ କରିଥିଲେ ।

## ମୂକ ଓ ବଧିର ତଥା ଶାରୀରିକ ଅକ୍ଷମଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି ସମ୍ପର୍କରେ ଆଲୋଚନା ବୈଠକ

ରାଜ୍ୟରେ ବସବାସ କରୁଥିବା ମୂକ ଓ ବଧିର ତଥା ଶାରୀରିକ ଅକ୍ଷମଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରି ସେମାନଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦେଇ ଥଇଥାନ କରାଯିବା ସମ୍ପର୍କରେ ଜୁଲାଇ ୧୩ ତାରିଖରେ ରାଜ୍ୟ ସଚିବାଳୟଠାରେ ଏକ ଆଲୋଚନା ବୈଠକ, ଶିଳ୍ପ ଓ ସରକାରୀ ଉଦ୍ୟୋଗ ତଥା ଓଡ଼ିଶା ମୂକ ବଧିର ସଙ୍ଘର ସଭାପତି ଶ୍ରୀ ଯାଦବ ମାଝୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ଏଭଳି ବ୍ୟକ୍ତିମାନଙ୍କ ସର୍ବାଙ୍ଗୀଣ ଉନ୍ନତି ତଥା ସେମାନଙ୍କ ନିମନ୍ତେ ରାଜ୍ୟ ସରକାରଙ୍କ ଓ ... ଉଦିଷ୍ଟ ବିଭିନ୍ନ ଚାକିରିରେ ନିଯୁକ୍ତି ଦେବା ସମ୍ପର୍କରେ ବିଭିନ୍ନ ବିଭାଗର ଉଚ୍ଚ କର୍ମକର୍ତ୍ତାମାନେ ମତବ୍ୟକ୍ତ କରିଥିଲେ ଏବଂ ବିଭିନ୍ନ ପ୍ରସ୍ତାବମାନ ଉପସ୍ଥାପନ କରିଥିଲେ ।

ଏହି ବୈଠକରେ ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଗ୍... ସାମଲ ଯୋଗ ଦେଇ କହିଲେ ଯେ ଟାଇପିଙ୍ଗ, କନିଷ୍ଠ ସହାୟକ, ଡାଇରିଷ୍ଟ ଭଳି ବିଭିନ୍ନ ଚାକିରିରେ ମୂକ ବଧିର ବ୍ୟକ୍ତିମାନଙ୍କୁ ନିଯୁକ୍ତି ଦିଆଯିବା ଏକାନ୍ତ ଆବଶ୍ୟକ । ସେମାନଙ୍କ ପାଇଁ ଉଦିଷ୍ଟ ତି... ଶତାଂଶ ସଂରକ୍ଷଣ ବ୍ୟବସ୍ଥାକୁ ଲାଗୁ କରିବା କ୍ଷେତ୍ରରେ ବିଭି... ଆଳରେ ଉପେକ୍ଷା କରାଯାଉଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ଆଦିବାସୀ ଓ ହରିଜନ ଶ୍ରେଣୀର ବ୍ୟକ୍ତିମାନଙ୍କ ସଂରକ୍ଷଣ ବ୍ୟବସ୍ଥାକୁ କଡ଼ାକଡ଼ି ଭାବେ କାର୍ଯ୍ୟକାରୀ କରାଯାଉଥିବା ବେଳେ ବାଧିତ ବ୍ୟକ୍ତିମାନଙ୍କ ପାଇଁ ଉଦିଷ୍ଟ ଅନୁରୂପ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ ।

ପଞ୍ଚାୟତିରାଜ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା ହେଲ୍‌ପର, ୱେଲ୍‌ଡର, ବାଇଣ୍ଡର, ପିଅନ୍, ଆଟେଣ୍ଡାଣ୍ଟ ଭଳି ସ୍ୱଳ୍ପ... କ୍ଷେତ୍ରରେ ଏଭଳି ବ୍ୟକ୍ତିମାନଙ୍କୁ ଅଗ୍ରାଧିକାର ଭିତ୍ତିରେ ନିଯୁକ୍ତି ଦେବା ଉପରେ ଗୁରୁତ୍ୱ ଆରୋପ କରି ସମ୍ପୃକ୍ତ ବିଭାଗଗୁଡ଼ିକ ଏଥିପାଇଁ କର୍ମ ନିଯୋଗ ସଂସ୍ଥାଗୁଡ଼ିକୁ ଆବଶ୍ୟକ ସୁପାରିଶ କରିବା ଲାଗି ପରାମର୍ଶ ଦେଇଥିଲେ । ଏହା ବ୍ୟତୀତ ଭିନ୍ନ ଭିନ୍ନ ନିଗମ ଓ ବୋର୍ଡ଼ଗୁଡ଼ିକରେ ସେମାନଙ୍କୁ ନିଯୁକ୍ତି ଦିଆଯିବା ଆବଶ୍ୟକ ବୋଲି ସେ ମତବ୍ୟକ୍ତ କରିଥିଲେ ।

ଶିକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମାଝୀ କହିଲେ ଯେ ଯେଉଁଳି ସ୍ୱତନ୍ତ୍ର ବିଭାଗ ଦ୍ୱାରା ହରିଜନ ଓ ଆଦିବାସୀ ପ୍ରାର୍ଥୀମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ନିଯୁକ୍ତି ବ୍ୟବସ୍ଥା କରାଯାଉଛି, ସେହିଭଳି ବିଭିନ୍ନ ପ୍ରକୃତି ସକାଶେ ବାଧିତ ଲୋକମାନଙ୍କ ପାଇଁ ସ୍ୱତନ୍ତ୍ର ନିଯୁକ୍ତି ବ୍ୟବସ୍ଥା କରାଯିବା ଉଚିତ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଶିଳ୍ପ ବିଭାଗର ଅତିରିକ୍ତ ଶାସନ ସଚିବ, ସରକାରୀ ଉଦ୍ୟୋଗ ବିଭାଗର ନିର୍ଦ୍ଦେଶକ ଓ ... ଅତିରିକ୍ତ ଶାସନ ସଚିବ, କର୍ମ ନିଯୋଗ ସଂସ୍ଥାର ନିର୍ଦ୍ଦେଶକ, ଶ୍ରୀ... କମିଶନର, ସ୍ୱରାଷ୍ଟ୍ର, ଶ୍ରମ ଓ କର୍ମ ନିଯୁକ୍ତି, ପଞ୍ଚାୟତିରାଜ ସାଧାରଣ ପ୍ରଶାସନ ବିଭାଗର ଉପଶାସନ ସଚିବ ବୃନ୍ଦ ଏବଂ ଓଡ଼ିଶା ମୂକ ବଧିର ସଙ୍ଘର ଉପସଭାପତି ଓ ସାଧାରଣ ସମ୍ପାଦକ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ବାଧିତ ବ୍ୟକ୍ତିମାନଙ୍କର କର୍ମ ନିଯୁକ୍ତି ସମ୍ପର୍କରେ ସୁଚିନ୍ତିତ ପରାମର୍ଶମାନ ଦେଇଥିଲେ ।

## ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୧୫୦ଟି ୟୁ:ପି: ଏମ୍:ଇ: ସ୍କୁଲ୍ ଖୋଲିବ

ଚଳିତ ଆର୍ଥିକ ବର୍ଷ ମଧ୍ୟରେ ରାଜ୍ୟର ୧୫୦ଟି ୟୁ:ପି: ସ୍କୁଲକୁ ଏମ୍: ଇ: ସ୍କୁଲରେ ପରିଣତ କରିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ

କରାଯାଉ. ପ୍ରଥମ ପର୍ଯ୍ୟାୟରେ ୪୦ଟି ୟୁ.ପି. ସ୍କୁଲରେ ୟୁ.ଜି. ଏମ୍.ଇ. ଖୋଲିବା ପାଇଁ ଇତିମଧ୍ୟରେ ସରକାର ସମ୍ପୃକ୍ତ ଅଧିକାରୀଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ସରକାରୀ ପର୍ଯ୍ୟାୟରେ ଏଭଳି ଆଉ ୧୧୦ଟି ୟୁ.ଜି. ଏମ୍.ଇ. ସ୍କୁଲ ଖୋଲାଯିବା କାର୍ଯ୍ୟକ୍ରମ ସ୍ଥିରହୋଇଥିବା ଜଣାଯାଏ ।

ବର୍ତ୍ତମାନ ଚିହ୍ନାଯାଇଥିବା ଏହି ୪୦ଟି ୟୁ.ପି. ସ୍କୁଲ ମଧ୍ୟରେ ସୁନ୍ଦରଗଡ ଜିଲ୍ଲାର ୭ଟି, କେନ୍ଦୁଝର ଜିଲ୍ଲାର ୬ଟି, ପୁରୀ ଜିଲ୍ଲାର ୬ଟି, ନୟାଗଡ ଜିଲ୍ଲାର ୪ଟି କୋରାପୁଟ ଜିଲ୍ଲାର ୫ଟି ଖୋର୍ଦ୍ଧା ଜିଲ୍ଲାର ୨ଟି, ନୂଆପଡ଼ା ଜିଲ୍ଲାର ୪ଟି ଏବଂ ବରଗଡ ଓ କଳାହାଣ୍ଡି ଜିଲ୍ଲାର ଗୋଟିଏ କରି ସ୍କୁଲ ଅନ୍ତର୍ଭୁକ୍ତ ।

## ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କର ପେନ୍‌ସନ୍ ଓ ପରିବାର ପେନ୍‌ସନ୍ ବୃଦ୍ଧି

ଖାଉଟି ମୂଲ୍ୟସୂଚୀ ବୃଦ୍ଧି ଦୃଷ୍ଟିରୁ ଅବସରପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କର ଅବସରକାଳୀନ ଭତ୍ତା ଏବଂ ମୃତ କର୍ମଚାରୀଙ୍କର ପରିବାର ଭତ୍ତା ଅସ୍ଥାୟୀ ଭାବରେ ଗତ ଜାନୁଆରୀ ପହିଲା ତାରିଖଠାରୁ ବୃଦ୍ଧି ପାଇଛି । ରାଜ୍ୟ ସରକାରଙ୍କର ଏହି ନିଷ୍ପତ୍ତି ଫଳରେ ୧,୭୫୦ ଟଙ୍କା ପର୍ଯ୍ୟନ୍ତ ପେନ୍‌ସନ୍ ବା ପରିବାର ପେନ୍‌ସନ୍ ପାଉଥିବା ବ୍ୟକ୍ତିମାନେ ୯୨ ପ୍ରତିଶତ, ୧,୭୫୧ ଟଙ୍କାରୁ ୩,୦୦୦ ଟଙ୍କା ପର୍ଯ୍ୟନ୍ତ ପେନ୍‌ସନ୍ ଓ ପରିବାର ପେନ୍‌ସନ୍ ପାଉଥିବା ବ୍ୟକ୍ତିମାନେ ୬୯ ପ୍ରତିଶତ ତଥା ଅନ୍ୟୁନ ୧,୬୧୦ ଟଙ୍କା ଏବଂ ୩,୦୦୦ ଟଙ୍କାରୁ ଅଧିକ ପେନ୍‌ସନ୍ ବା ପରିବାର ପେନ୍‌ସନ୍ ପାଉଥିବା ବ୍ୟକ୍ତିମାନେ ୫୯ ପ୍ରତିଶତ ତଥା ଅନ୍ୟୁନ ୨,୦୭୦ ଟଙ୍କା ଅସ୍ଥାୟୀ ବର୍ଦ୍ଧିତ ପେନ୍‌ସନ୍ ପାଇ ପାରିବେ ।

## ନୂତନ ଶିଳ୍ପ ନୀତି – ଅଗ୍ରାଧିକାର କ୍ଷେତ୍ର

ଶିଳ୍ପ ନୀତି– ୧୯୯୨ର ବ୍ୟବସ୍ଥା ଅନୁଯାୟୀ ଅର୍ଥନୈତିକ ସହାୟତା ଓ ରିହାତି ଦିଗରେ ସ୍ୱତନ୍ତ୍ର ସୁବିଧା ଯୋଗାଇ ଦେବା ନିମନ୍ତେ କେତେକ ଶିଳ୍ପକୁ ଅଗ୍ରାଧିକାର ଦେବାରେ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହି ଅଗ୍ରାଧିକାରଭିତ୍ତିକ ଶିଳ୍ପ ମଧ୍ୟରେ କୃଷି ଭିତ୍ତିକ ଶିଳ୍ପ, ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ, ବିହନ ଉତ୍ପାଦନ, ଉଦ୍ୟାନୀ ଭିତ୍ତିକ ପୁଷ୍ପ ଉତ୍ପାଦନ, ଜୈବିକ ଉଦ୍ୟୋଗ ଶିଳ୍ପ ତଥା ସାମୁଦ୍ରିକ ମତ୍ସ୍ୟ ଶିଳ୍ପକୁ ଅନ୍ତର୍ଭୁକ୍ତ କରାଯାଇଛି ।

ରାଜ୍ୟର ଅର୍ଥନୀତି ମୁଖ୍ୟତଃ କୃଷି ଭିତ୍ତିକ ହୋଇଥିବା ଦୃଷ୍ଟିରୁ ଏବଂ ରାଜ୍ୟର ପ୍ରାୟ ୮୦ ପ୍ରତିଶତ ବ୍ୟକ୍ତି କୃଷକ ଓ କୃଷି ଶ୍ରମିକ ହୋଇଥିବା ଯୋଗୁଁ, କୃଷିଭିତ୍ତିକ ଶିଳ୍ପର ସାମୁହିକ ବିକାଶ ମାଧ୍ୟମରେ ରାଜ୍ୟର ଅର୍ଥନୈତିକ ପ୍ରଗତି ସମ୍ଭବପର ହୋଇ ପାରିବ । ତେଣୁ ନୂତନ ଶିଳ୍ପ ନୀତିର ଅଗ୍ରାଧିକାର କ୍ଷେତ୍ର ନିର୍ଣ୍ଣୟ କଲାବେଳେ ଏହି ଦିଗ ପ୍ରତି ବିଶେଷ ଦୃଷ୍ଟି ଦିଆ ଯାଇଛି । ଉପଯୁକ୍ତ ୬ଟି ଶିଳ୍ପ ପାଇଁ ଯେଉଁ ଯେଉଁ କ୍ଷେତ୍ରରେ ସହାୟତା ଓ ରିହାତି ପାଇଁ ଅଗ୍ରାଧିକାର ଦିଆଯିବ ତାହା ସରକାରୀ ଆଦେଶରେ ନିର୍ଦ୍ଧାରିତ କରାଯାଇଥିଲେ ମଧ୍ୟ, ତାହା ପରିବର୍ତ୍ତନଶୀଳ ଏବଂ କୃଷି ବିଭାଗର ଅନୁମୋଦନ କ୍ରମେ ଶିଳ୍ପ ବିଭାଗ ପକ୍ଷରୁ ପରବର୍ତ୍ତୀ ପର୍ଯ୍ୟାୟରେ ଏହି ପରିବର୍ତ୍ତନ କରାଯିବା ସ୍ଥିର କରାଯାଇଛି ।

## ଆଦିବାସୀ ମହିଳାମାନଙ୍କ ନିମନ୍ତେ ଶିକ୍ଷା କଂପ୍ଲେକ୍ସ

ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀ ମହିଳାମାନଙ୍କ ସାକ୍ଷରତା ଅଭିବୃଦ୍ଧି ଉଦ୍ଦେଶ୍ୟରେ ଭାରତ ସରକାର ଏକ ନୂତନ କେନ୍ଦ୍ରୀୟ ଯୋଜନା ଅନୁମୋଦନ କରିଛନ୍ତି । ଏହି ଯୋଜନାର ନାମକରଣ, "ଆଦିବାସୀ ଅଞ୍ଚଳରେ ଆଦିବାସୀ ମହିଳାମାନଙ୍କ ସାକ୍ଷରତା ଅଭିବୃଦ୍ଧି ନିମନ୍ତେ ସ୍ୱଳ୍ପ ସାକ୍ଷର ଅଞ୍ଚଳରେ ଶିକ୍ଷା କଂପ୍ଲେକ୍ସ" ରଖାଯାଇଛି । ଏହି ଯୋଜନାଟି ୧୯୯୩–୯୪ରୁ କାର୍ଯ୍ୟକାରୀ ହେବ ଏବଂ ଏହା ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ ମଧ୍ୟ ଚାଲୁ ରହିବ ।

ଯୋଜନାର ମୁଖ୍ୟ ବୈଶିଷ୍ଟ୍ୟଗୁଡ଼ିକ ହେଲା– ଏହି କେନ୍ଦ୍ରୀୟ ଯୋଜନା ପାଇଁ ଭାରତ ସରକାରଙ୍କ କଲ୍ୟାଣ ମନ୍ତ୍ରଣାଳୟ ସମସ୍ତ ଅର୍ଥ ବହନ କରିବେ ଓ ଏହା ବେସରକାରୀ ଅନୁଷ୍ଠାନ ଜରିଆରେ କାର୍ଯ୍ୟକାରୀ କରାଯିବ । ଏହି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଆଦିବାସୀ ବାଳିକାମାନଙ୍କ ନିମନ୍ତେ ଏକ ଆବାସିକ ଶିକ୍ଷା କଂପ୍ଲେକ୍ସ ରୂପେ କାର୍ଯ୍ୟ କରିବ । ଏହି ଅନୁଷ୍ଠାନଗୁଡ଼ିକରେ ବୃତ୍ତିଗତ ତାଲିମ ସହିତ ବାଳିକାମାନଙ୍କୁ ସାମୟିକ ଭାବେ ଡାକ୍ତରୀ ପରୀକ୍ଷା କରାଯିବାର ବ୍ୟବସ୍ଥା ରହିଛି । ଅନୁଷ୍ଠାନରେ ସନ୍ଧ୍ୟା ସମୟରେ ସମ୍ପୃକ୍ତ ଛାତ୍ରୀମାନଙ୍କର ଅଭିଭାବକମାନଙ୍କୁ ଶିକ୍ଷା ଦିଆଯିବ । ସମ୍ପୃକ୍ତ ଆଦିବାସୀ ଛାତ୍ରୀମାନଙ୍କୁ ଅଭିଭାବକମାନେ ଯେପରି ତାଙ୍କର କନ୍ୟାମାନଙ୍କୁ ନିୟମିତ ଶିକ୍ଷାନୁଷ୍ଠାନକୁ ପଠାନ୍ତି, ସେଥିପାଇଁ ସେମାନଙ୍କୁ ପ୍ରୋତ୍ସାହନ ଆକାରରେ ମାସିକ ୩୦ ଟଙ୍କା ଲେଖାଏଁ ଦିଆଯିବ । ଶିକ୍ଷାନୁଷ୍ଠାନରେ ଛାତ୍ରୀମାନଙ୍କୁ ମାଗଣାରେ ରହିବା, ଖାଇବା ବ୍ୟବସ୍ଥା ସହିତ ପଠନ ସାମଗ୍ରୀ ଓ ପୋଷାକ ପରିଛଦ ଯୋଗାଇ ଦିଆଯିବ । ଆଦିମ ଆଦିବାସୀ ବାଳିକାମାନଙ୍କୁ ଏହି ଶିକ୍ଷା କାର୍ଯ୍ୟରେ ଅଗ୍ରାଧିକାର ଦିଆଯିବ ।

ରାଜ୍ୟ ସରକାର ଏଭଳି ଶିକ୍ଷା କଂପ୍ଲେକ୍ସ ପ୍ରତିଷ୍ଠା ନିମନ୍ତେ ବିନା ମୂଲ୍ୟରେ ଜମି ଯୋଗାଇ ଦେବା ସଙ୍ଗେ ସଙ୍ଗେ ବିଭକ୍ତ ଜିଲ୍ଲାର ସ୍ୱଳ୍ପ ସାକ୍ଷର ଅଞ୍ଚଳକୁ ଦୃଷ୍ଟିରେ ରଖି ଉକ୍ତ ଆବାସିକ ବିଦ୍ୟାଳୟ କେଉଁଠାରେ ସ୍ଥାପନ କରାଯିବ, ତାହା ସ୍ଥିର କରିବେ । ଉପ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ତହସିଲ୍‌ସ୍ତରୀୟ କମିଟି ଗଠନ କରାଯାଇ ଏହି କମିଟି ଦ୍ୱାରା ଉକ୍ତ ଶିକ୍ଷା କଂପ୍ଲେକ୍ସର ସ୍ଥାନ ନିରୂପଣ ଚୂଡ଼ାନ୍ତ କରାଯିବ । ଏହା ବ୍ୟତୀତ ରାଜ୍ୟ ସରକାର ସମ୍ପୃକ୍ତ ଶିକ୍ଷାନୁଷ୍ଠାନକୁ ସରକାରୀ ସ୍ୱୀକୃତି ପ୍ରଦାନ କରିବେ ଏବଂ ଶିକ୍ଷା ବିଭାଗ ଓ ଆଦିବାସୀ କଲ୍ୟାଣ ବିଭାଗର କର୍ମକର୍ତ୍ତା ଶିକ୍ଷାନୁଷ୍ଠାନର ପରିଚାଳନା ତଦାରଖ କରିବେ ।

ଉପରୋକ୍ତ ମୁଖ୍ୟ ବୈଶିଷ୍ଟ୍ୟ ପରିପ୍ରେକ୍ଷୀରେ ଯେଉଁ ବେସରକାରୀ ଅନୁଷ୍ଠାନ ଶିକ୍ଷା ତଥା ଆଦିବାସୀ କଲ୍ୟାଣ କ୍ଷେତ୍ରରେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କରି ଖ୍ୟାତିଲାଭ କରିଛନ୍ତି, ସେମାନେ ତାଙ୍କର ପୂର୍ଣ୍ଣ ବିବରଣୀ ସହ ନିର୍ଦ୍ଧାରିତ ଫର୍ମରେ ବିଶଦ ବିବରଣୀ ସମ୍ପୃକ୍ତ ଜିଲ୍ଲାପାଳମାନଙ୍କ ଜରିଆରେ ଏକ ସପ୍ତାହ ମଧ୍ୟରେ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ପାଇଁ ଓଡ଼ିଶା ସରକାରଙ୍କ ଆଦିବାସୀ କଲ୍ୟାଣ ବିଭାଗ ନିକଟକୁ ପଠାଇବା ଆବଶ୍ୟକ ।

## ରାଜ୍ୟର କିରୋସିନି ଓ ଚିନି କୋଟା ବୃଦ୍ଧି ପାଇବ

**—ଯୋଗାଣ ମନ୍ତ୍ରୀ ଶ୍ରୀ ବେହେରା**

ରାଜ୍ୟ ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ତାଙ୍କ ଦିଲ୍ଲୀ ଗସ୍ତ ସମୟରେ ଗତକାଲି କେନ୍ଦ୍ର ଅର୍ଥମନ୍ତ୍ରୀ ଡଃ ମନମୋହନ ସିଂହ, ଯୋଗାଣ ମନ୍ତ୍ରୀ ଶ୍ରୀ ଏ.କେ. ଆଣ୍ଟୋନି ଓ ପେଟ୍ରୋଲିୟମ ତଥା ପ୍ରାକୃତିକ ବାଷ୍ପ ବିଭାଗ ମନ୍ତ୍ରୀ କ୍ୟାପ୍‌ଟେନ୍ ସତିଶ ଶର୍ମାଙ୍କ ସହ ଏକ ବୈଠକରେ ମିଳିତ ହୋଇ ଓଡ଼ିଶାକୁ କିରୋସିନି ଯୋଗାଣ ବୃଦ୍ଧି ସମ୍ପର୍କରେ ଆଲୋଚନା କରିଥିଲେ । ଓଡ଼ିଶା ସମେତ ଯେଉଁ ରାଜ୍ୟଗୁଡ଼ିକ କମ୍ କିରୋସିନି ପାଉଛନ୍ତି, ସେମାନଙ୍କୁ ଅନ୍ୟ ରାଜ୍ୟ ସଙ୍ଗେ ସମାନ କରି ଅଧିକ ପରିମାଣରେ କିରୋସିନି ତୁରନ୍ତ ଯୋଗାଇ ଦିଆଯିବ ବୋଲି ବୈଠକରେ ନିଷ୍ପତ୍ତି ହୋଇଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପୂର୍ବରୁ ବାଲାନ୍‌ସ ଅଫ୍ ପେମେଣ୍ଟର ଅବସ୍ଥା ଭଲ ନଥିବା ହେତୁ କ୍ୟାପ୍‌ଟେନ୍ ଶର୍ମା ଓଡ଼ିଶାକୁ ଅଧିକ କିରୋସିନି ଯୋଗାଣ ସମ୍ଭବ ନୁହେଁ ବୋଲି କହିଥିବାରୁ ଓଡ଼ିଶା ପାଇଁ କିରୋସିନି କୋଟା ବଢ଼ାଇବା ସମ୍ପର୍କରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ପ୍ରଧାନ ମନ୍ତ୍ରୀଙ୍କ ନିକଟକୁ ଏକ ଚିଠି ପଠାଇଥିଲେ । ଏହି ଚିଠି ପାଇବା ପରେ ଉକ୍ତ ବୈଠକ ଅନୁଷ୍ଠିତ ହୋଇଥିଲା ।

ଏହି ଅବସରରେ ମନ୍ତ୍ରୀ ଶ୍ରୀ ବେହେରା କେନ୍ଦ୍ର ଖାଦ୍ୟ ମନ୍ତ୍ରୀ ଶ୍ରୀ କଳ୍ପନାଥ ରାୟଙ୍କ ସହିତ ମଧ୍ୟ ଆଲୋଚନା କରି ଓଡ଼ିଶାକୁ ଚିନି କୋଟା ବଢ଼ାଇବା ପାଇଁ କହିଥିଲେ ଏବଂ ଶ୍ରୀ ରାୟ ଚିନି କୋଟା ବଢ଼ାଇବେ ବୋଲି ପ୍ରକାଶ କରିଥିଲେ ।

## ୫୦ ତମ ପେନ୍‌ସନ୍ ଅଦାଲତ ବୈଠକ

ସମ୍ପ୍ରତି ସଚିବାଳୟଠାରେ ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ମନ୍ତ୍ରୀ ଡଃ ପ୍ରସନ୍ନ ପାଟଶାଣୀଙ୍କ ଅଧ୍ୟକ୍ଷତାରେ ୫୦ ତମ ପେନ୍‌ସନ୍ ଅଦାଲତ ବୈଠକ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ବିଭିନ୍ନ ବିଭାଗର ଫଇସଲା ନହୋଇ ଦୀର୍ଘଦିନ ଧରି ପଡ଼ି ରହିଥିବା ୮୨ଟି ପେନ୍‌ସନ୍ ମାମଲା ଉପସ୍ଥାପନ କରାଯାଇ ସମୀକ୍ଷା ପରେ ସେଥିମଧ୍ୟରୁ ୫୦ଟି ମାମଲା ତତ୍କ୍ଷଣାତ୍ ସ୍ଥଳରେ ଫଇସଲା କରାଯାଇଥିଲା ।

ବିଭିନ୍ନ ବିଭାଗର ଦୀର୍ଘଦିନ ଧରି ଫଇସଲା ନହୋଇ ପଡ଼ି ରହିଥିବା ପେନ୍‌ସନ୍ ମାମଲାଗୁଡ଼ିକର ତୁରନ୍ତ ଫଇସଲା ପାଇଁ ମନ୍ତ୍ରୀ ଡଃ ପାଟଶାଣୀ ସମ୍ପୃକ୍ତ ବିଭାଗୀୟ କର୍ମଚାରୀ ଓ ପେନ୍‌ସନ୍ ମଞ୍ଜୁର ଅଧିକାରୀଙ୍କୁ ପରାମର୍ଶ ଦେବା ସଙ୍ଗେ ସଙ୍ଗେ ଅବସରପ୍ରାପ୍ତ କର୍ମଚାରୀମାନେ ଯେପରି ଠିକ୍ ଭାବେ ଯଥାସମୟରେ ସେମାନଙ୍କ ପେନ୍‌ସନ୍ ପାଇପାରିବେ, ସେଥିପାଇଁ ସମ୍ପୃକ୍ତ କର୍ମଚାରୀଗଣ ବିଶେଷ ଧ୍ୟାନ ଦେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଶ୍ରୀ ଚିତ୍ତରଞ୍ଜନ ଷଡ଼ଙ୍ଗୀ ଓ ଶ୍ରୀ କୁଞ୍ଜମଣି ରାଉତଙ୍କ ସମେତ ଅତିରିକ୍ତ ମୁଖ୍ୟ ଶାସନ ସଚିବ ତଥା ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ ବିଭାଗର ଶାସନ ସଚିବ ଶ୍ରୀ ପ୍ରସନ୍ନ କୁମାର ପଟ୍ଟନାୟକ ଓ ନିର୍ଦ୍ଦେଶକ ଶ୍ରୀ କେ.ସି. ମିଶ୍ର, ଡେପୁଟି ଏକାଉଣ୍ଟାଣ୍ଟ ଜେନେରାଲ ଶ୍ରୀ ଏସ୍. ଏନ୍. ଦାସ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ରାଜ୍ୟରେ ୫୬,୭୬୧ ଜଣ ଗୋତି ଶ୍ରମିକ ଥଇଥାନ

ରାଜ୍ୟରେ ଗତ ଅପ୍ରେଲ ଶେଷ ସୁଦ୍ଧା ୮୦୦.୬୨ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ୫୬,୭୮୧ ଜଣ ଗୋତିମୁକ୍ତ ଶ୍ରମିକଙ୍କୁ ଥଇଥାନ କରାଯାଇଛି । ଏହି ଯୋଜନା ଆରମ୍ଭରୁ ଗତ ଅପ୍ରେଲ ମାସ ସୁଦ୍ଧା ରାଜ୍ୟରେ ଚିହ୍ନଟ କରାଯାଇଥିବା ୫୯,୯୮୨ ଜଣ ଗୋତି ଶ୍ରମିକଙ୍କ ମଧ୍ୟରୁ ୫୮,୮୬୬ ଜଣଙ୍କୁ ଗୋତିମୁକ୍ତ କରାଯାଇଛି । ସେମାନଙ୍କ ମଧ୍ୟରୁ ୫୬,୭୮୧ ଜଣଙ୍କୁ ଥଇଥାନ କରାଯାଇଛି । ଥଇଥାନ ହୋଇଥିବା ଶ୍ରମିକଙ୍କ ମଧ୍ୟରେ ୧୮,୩୯୯ ଜଣ ଆଦିବାସୀ ଓ ୧୨,୭୬୨ ଜଣ ହରିଜନ ଶ୍ରମିକ ଅଛନ୍ତି ।

OGP-MP-PTS (I&PR) 30-10,000-22-9-1993



ରବୀନ୍ଦ୍ର ମଣ୍ଡପଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ ୟୁଥ୍ ଏଣ୍ଡିଙ୍ଗ୍ ହଙ୍ଗର୍ (ଇଣ୍ଡିଆ) କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରୁଛନ୍ତି (୭/୮)।



କଟକ ଏସ୍: ସି: ବି: ମେଡ଼ିକାଲ୍ କଲେଜ୍ ହସ୍‌ପିଟାଲ୍‌ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଓପନ୍ ହାର୍ଟ ସର୍ଜରୀ ୟୁନିଟ୍ ପରିଦର୍ଶନ କରୁଛନ୍ତି (୧୩/୮)।

